ଶ୍ରୀ :—

# ସଚ୍ଚିଦାନନ୍ଦ ଗ୍ରନ୍ଥାବଳୀ ।

—∞*O*∞—


ରାଜା ଶ୍ରୀମାନ୍ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ
ବାମଣ୍ଡାଧୀଶ୍ୱର ମହୋଦୟଙ୍କ
ପ୍ରଣୀତ ।


—∞*O*∞—


ବାମଣ୍ଡା ବୁକ୍ ପବ୍ଲିଶିଂ କୋମ୍ପାନୀ ଲିମିଟେଡ଼ଙ୍କ
ଦ୍ୱାରା ପ୍ରକାଶିତ ।

ପ୍ରଥମ ସଂସ୍କରଣ ।

—∞*O*∞—

ହିତୈଷିଣୀ - ଇଲେକ୍ଟ୍ରିକ୍ - ମେଶିନ - ପ୍ରେସ୍-
ସେକ୍ରେଟର ଶ୍ରୀଦୀନବନ୍ଧୁ ଗଡ଼ନାୟକଙ୍କ ଦ୍ୱାରା
ମୁଦ୍ରିତ ।

ବାମଣ୍ଡା ।

୧୯୧୧


—∞*O*∞—

# ଉଦ୍ବୋଧନ ।

—— ✻ ✻ ——

ନରତ୍ୱଂ ଦୁର୍ଲ୍ଲଭଂ ଲୋକେ,
ବିଦ୍ୟା ତତ୍ର ସୁଦୁର୍ଲ୍ଲଭା ;
କବିତ୍ୱଂ ଦୁର୍ଲ୍ଲଭଂ ତତ୍ର,
ଶକ୍ତିଃ ତତ୍ର ସୁଦୁର୍ଲ୍ଲଭା ।

ହିନ୍ଦୁ ଶାସ୍ତ୍ର - ପୁରାଣାଦିରେ କଥିତ ଅଛି, ସକଳ ପ୍ରାଣୀ ଅପେକ୍ଷା ନରଶ୍ରେଷ୍ଠ, ତନ୍ମଧ୍ୟରେ ନରପତି ହେବା ଅତି ଉତ୍କୃଷ୍ଟ ତପସ୍ୟାର ଫଳ । ପ୍ରତିନିୟତ ଏସଂସାରକୁ କୋଟି କୋଟି ନରନାରୀ ଆସୁଅଛନ୍ତି, ଯାଉଅଛନ୍ତି; କିନ୍ତୁ ଅଳ୍ପ ମାତ୍ର ନରପତି ଆସନ୍ତି, ଯାଆନ୍ତି ପୁଣି ସେହି ନରପତି ମାନଙ୍କ ମଧ୍ୟରେ ଯେଉଁ ମାନେ ଯଶଃ - କୀର୍ତ୍ତି ଉପାର୍ଜ୍ଜନ କରନ୍ତି ସେମାନେ ଧନ୍ୟ କୀର୍ତ୍ତିସ୍ଥାପନ ନାନା ପ୍ରକାର କାର୍ଯ୍ୟଦ୍ୱାରା କରାଯାଏ ତନ୍ମଧ୍ୟରେ ଆନ୍ତରୀକ କୀର୍ତ୍ତି ସର୍ବପ୍ରଧାନ ।

ହିନ୍ଦୁ-ଶାସ୍ତ୍ରାନୁସାରେ ରାଜା 'ବିଷ୍ଣୁରୂପି'
"ନା ବିଷ୍ଣୁଃ ପୃଥିବୀ-ପତିଃ
ଅଷ୍ଟାଭି - ର୍ଲୋକ -
ମାତ୍ରାଭି - ର୍ନିର୍ମ୍ମିତୋ ନୃପଃ" ।

ପୁଣି—

"ମହତୀ ଦେବତା ହ୍ୟେଷା
ନର - ରୂପେଣ ସଂସ୍ଥିତା" ।

ଏକେ ରାଜା, ସେ ପୁଣି ଯଦ୍ୟପି କବି ହୁଅନ୍ତି; ଦେଶ ପକ୍ଷେ ପରମ ସୌଭାଗ୍ୟର ବିଷୟ।

ପବିତ୍ର ଗଙ୍ଗ - ବଂଶ ଅବିଚ୍ଛିନ୍ନ କାଳରୁ ସୁପ୍ରତି-ଷ୍ଠିତ। ଭାରତମାତାର ବକ୍ଷରେ ଯେତେଦିନ ଅମୃତ ସ୍ରାବିଣୀ ପୁଣ୍ୟତୋୟା ଗଙ୍ଗା ପ୍ରବାହିତା ହେଉଥିବେ, ତେତେଦିନ ଆର୍ଯ୍ୟ ହିନ୍ଦୁଗଣ ଏହାଙ୍କର ସ୍ପର୍ଶରେ ପବିତ୍ର ଓ ମୁକ୍ତିର ପ୍ରଧାନ ଆଶ୍ରୟ ବୋଲି ଶାନ୍ତି ଲାଭ କରୁ-ଥିବେ। ଶବ୍ଦର ଶକ୍ତି କମନୁହେ— "ମାଭୈଃ" ବୋଲି ବା ମାତ୍ରେ ସ୍ୱତଃ କେତେ ଆଶା, କେତେ ଉତ୍ସାହ, କେତେ ସାହସ ବୃଦ୍ଧି ହୁଏ!! 'ଗଙ୍ଗ—ଶ୍ରୀ' ନାମ— ପ୍ରଭାବରେ ସେହି ପରି ଚିରଦିନ ଦୀପ୍ତିମାନ୍।

ପୂର୍ବକାଳରେ କବି ଓ ଋଷି ମଧ୍ୟରେ କୌଣସି ଭେଦ ନଥିଲା। ଏହି ପଦବୀ ବିଶେଷତଃ ନୈସ-ର୍ଗିକ କବିମାନଙ୍କ ନିମନ୍ତେ ପ୍ରଯୁକ୍ତ ହେଉଥିଲା।

ଶାବତଂସ ପ୍ରଜାବତ୍ସଳ ବାମଣ୍ଡାଧିପତି 'ବିନୋଦ' ରାଜକବି ଶ୍ରୀମାନ୍ ସଚ୍ଚିଦା-ନନ୍ଦ ମହୋଦୟ ଶୈଶବ କାଳରୁ କାବ୍ୟ - ସାହିତ୍ୟାଦି ଅନୁଶୀଳନରେ କବିତାଦି ରଚନା କରୁଥିଲେ। ବୟୋ-

ବୃଦ୍ଧି ସଙ୍ଗେ ଗୁରୁତର ଗ୍ରନ୍ଥାଦିର ରଚନା କରି ମାତୃଭାଷାର ସମ୍ୟକ୍ ଉନ୍ନତି କଲେ ଯତ୍ନବାନ୍ ହୋଇ ସଫଳତା ଲଭକର୍ କେତେଦୂର ଅଗ୍ରାସ ସାଧ ତାହା ସହଜରେ ଅନୁମେୟ । ମହାକବି କାଳିଦାସ କହିଅଛନ୍ତି :—

"ଆକାର-ସଦୃଶ-ପ୍ରଜ୍ଞଃ
ପ୍ରଜ୍ଞୟା ସଦୃଶାଗମଃ
ଆଗମୈଃ ସଦୃଶାରମ୍ଭଃ
ପ୍ରାରମ୍ଭ-ସଦୃଶୋ-ଦୟଃ"

ବୋଲି ବାହୁଲ୍ୟ, ସ୍ୱର୍ଗକବିଙ୍କର ଜ୍ଞାନବୃଦ୍ଧି ସଙ୍ଗେ ରଚନାର ଉତ୍କର୍ଷତା ସାଧିତ ହୋଇଅଛି ।

ତାହାଙ୍କ ପ୍ରଣୀତ ପୁସ୍ତକ ମାନଙ୍କ ମଧ୍ୟରୁ ଅନେକ ନିଃଶେଷ ହୋଇଥିବାରୁ ଅଥଚ ଅନେକ ସମୟରେ ସାହିତ୍ୟାନୁରାଗୀ ବ୍ୟକ୍ତିମାନେ ସେସବୁ ପୁସ୍ତକ ନିମନ୍ତେ ଆଗ୍ରହ ପ୍ରକାଶ କରୁଥିବାରୁ ଆମ୍ଭେମାନେ ମାନନୀୟ ସ୍ୱର୍ଗକବି ମହୋଦୟଙ୍କର ଅନୁମତି ନେଇ ସମସ୍ତ ପୁସ୍ତକ ଏକାଧାରେ କବିଙ୍କର ନାମାନୁସାରେ "ସଚ୍ଚିଦାନନ୍ଦ ଗ୍ରନ୍ଥାବଳୀ" ନାମରେ ଅଭିହିତ କରି ପ୍ରକା

ସଚ୍ଚିଦାନନ୍ଦ ଗ୍ରନ୍ଥାବଳୀରେ,
କାଦମ୍ବିନୀ - ପ୍ରଥମଖଣ୍ଡ ; ବୈଦିକ
(ଗୌତଣା), ପ୍ରେମ ସ୍ତବକ, ଚାର
ଗତ ତିନିବର୍ଷ ମଧ୍ୟରେ ରଚିତ ।

।

ଅନଙ୍ଗ, ମାୟାଶବରୀ, ଗୁପ୍ତରହସ୍ୟ, ଔଷ୍ଣ, ଚନ୍ଦ୍ର-ବୃତ୍ତ ଏତ୍ସପାଣ୍ଡୁଖଣ୍ଡ ଯୁବରାଜ ଅବସ୍ଥାରେ ରଚିତ । 'ବିବିଧ କବିତା' ମଧ୍ୟରୁ ଢପର ସ୍ତୁତିକି, ଶ୍ରୀମାନ୍-ସୋନପୁର-ଯୁବରାଜଙ୍କର ଉପନୟନ ଉପଲକ୍ଷେ, ଅଲେଖ୍ୟର ପଞ୍ଚଚପ୍ଟ, ପରଲୋକଗତା କନ୍ୟାପ୍ରତି, ବସନ୍ତ ଜୀବାସର ଉଦ୍ବୋଧନ ଓ ଶ-ଷ-ସ-କାର ଭେଦେ ବସନ୍ତ ନିବାସ ସମ୍ବନ୍ଧେ କବିତା ଗୁଡ଼ିକ ୨।୩ ବର୍ଷ ମଧ୍ୟରେ ଓ 'ଇନ୍ଦୁମାମୁଁ' କବିତାଟି ଯୁବରାଜ ଅବସ୍ଥାରେ ରଚିତ । 'ବାଲ୍ୟ କବିତାବଳୀ' ମଧ୍ୟରେ ପ୍ରକାଶିତ କବିତା ଗୁଡ଼ିକ ନାମକରଣରୁ ସମୟ ନିର୍ଦ୍ଦେଶ କରି ଦେଉଅଛି ।

ଏସ୍ଥଳରେ ରାଜକବି ମହୋଦୟଙ୍କ ପ୍ରଣୀତ କାବ୍ୟ ପ୍ରଭୃତିର ସମାଲୋଚନା କରିବା ଉଦ୍ଦେଶ୍ୟ ନୁହେ, ଉତ୍କଳ-ସାହିତ୍ୟୋଦ୍ୟାନ-ବିହାରୀ ବ୍ୟକ୍ତିମାନେ ଏଥିର ମଧୁର-କବିତା-ସୁଧା ଆସ୍ୱାଦନ କରିଅଛନ୍ତି । ଆମ୍ଭେମାନେ ଯେଉଁମାନଙ୍କୁ ଉତ୍କଳ-ସାହିତ୍ୟ-କ୍ଷେତ୍ରର ନେତା ବୋଲି ସମ୍ମାନ କରୁଁ ସେମାନେ ...ଶଙ୍କ ଓ ମାସିକ ପତ୍ରିକାରେ ଭୂରି ଭୂରି ପ୍ରଶଂସା ...ହିଛି ।

ମାନ୍ୟବର-ସଂସାର-ସାର୍ବଭୌମ ରାୟ
ରାଓ ବାହାଦୁର ମହୋଦୟ 'ପ୍ରକୃତି'
ପାଠ-ରେ ପରମ ପରିତୁଷ୍ଟ ହୋଇ ରାଜକବି ମହୋ-

ଯାଙ୍କୁ 'ପ୍ରକୃତ କବି' ଉପାଧି ଭୂଷଣରେ ଭୂଷିତକରି ଯେଉଁ କବିତାଟି ଲେଖିଅଛନ୍ତି, ନିମ୍ନେ ଅବିକଳ ତାହା ପ୍ରଦତ୍ତ ହେଲା ।

"ପ୍ରକୃତ ପାଠେ
'ପ୍ରକୃତି'-କବିଙ୍କ ପ୍ରତି ।

"ମହାକାଳ ଜଳେମଗ୍ନ କଳ୍ପାରମ୍ଭ କାଳେ
ମହା ପ୍ରକୃତିର ମହାଭୂତ ବିବର୍ତ୍ତନ,
ମହା ବ୍ୟୋମେ ବିସ୍ଫାରିତ ସ୍ଫୂର୍ତ୍ତି ଇନ୍ଦ୍ରଜାଲେ
ବିଶ୍ୱର ଉଲ୍ଲାସମୟ ଉନ୍ମତ୍ତ ନର୍ତ୍ତନ-
କଳୁହକେ ନାଶି କୋଟି ବର୍ଷ ଅନ୍ତରାଳେ
ସହସା ଏ ସୃଷ୍ଟି ଲୀଳା କଲି ଦରଶନ
ପୁଣି କି ଅମୃତ ଛନ୍ଦେ କି ମନୋଜ୍ଞ ତାଳେ
ଏ ନବ 'ପ୍ରକୃତି' ଗାଥା କରି ବିରଚନ

ଉତ୍କଳ ଭାରତୀ କୋଠ-ଭଣ୍ଡାରେ ହେ କବି
ଅର୍ପିଲ କବିତା-ରତ୍ନ ଚିରନବ ଛବି !
ଫୁଟେ ମଣିଗଣ ପରି ଦେଖିଛୁ ନୃମଣି !
ଅବିଚ୍ଛିନ୍ନ ବିଶ୍ୱସୂତ୍ରେ ବିଧୃତ ସକଳ-
ରବି, ଶଶୀ, ତାରା, ଜୀବ-ଧାତ୍ରୀ ଏଧ...
ସେ ବିଶ୍ୱର ନାମାନ୍ତର ନୁହେଁ କି ମ...

ରାଜକବି ମହୋଦୟଙ୍କ ପ୍ରଣୀତ
ସାର' ଗବର୍ଣ୍ଣମେଣ୍ଟ ନିର୍ବାଚିତ ପାଠ୍ୟ
ହୋଇଥିବା ଯୋଗୁଁ ତାହା ସ୍ୱତନ୍ତ୍ର ପ୍ର...ଶିତ ।

ହୋଇଅଛୁ, ସୁତରାଂ ଏହା ଗ୍ରନ୍ଥାବଳୀ ମଧ୍ୟରେ ଦିଆଯାଇନାହିଁ ।

ଅପର ଏକଖଣ୍ଡ ବୃହତ୍ ପୁସ୍ତକ 'ବୃଷ୍ଟି ବିଜ୍ଞାନ' ଯନ୍ତ୍ରସ୍ଥ — ଏପରି ଅତି ଅବଶ୍ୟକୀୟ ଅଥଚ ବୃହଦାକାର ବିଜ୍ଞାନଗ୍ରନ୍ଥ ଅଦ୍ୟପର୍ଯ୍ୟନ୍ତ ଉତ୍କଳ ଭାଷାରେ ପ୍ରକାଶିତ ହୋଇନାହିଁ କମ୍ବା ଶୀଘ୍ର ଯେ ହେବ, ସେପରି ସମ୍ଭାବନା ଅତିଅଳ୍ପ । ସୁତରାଂ 'ବୃଷ୍ଟିବିଜ୍ଞାନ' ସ୍ୱତନ୍ତ୍ର ଭାବେ ପ୍ରକାଶିତ ହେବ ।

ଉପସଂହାରରେ ଅମ୍ଭମାନଙ୍କର ବକ୍ତବ୍ୟ ଏହି ଯେ ସହୃଦୟ ପାଠକଗଣ 'ସଚ୍ଚିଦାନନ୍ଦ ଗ୍ରନ୍ଥାବଳୀ' ଆଦ୍ୟୋପାନ୍ତ ଏକଥର ପାଠକଲେ ଅମ୍ଭମାନଙ୍କର ଅର୍ଥବ୍ୟୟ ଓ ପରିଶ୍ରମ ସାର୍ଥକ ହେବ ।

ଦେବଗଡ, ବାମଣ୍ଡା
ତା ୨୬।୧୧।୧୯୧୧ ଇ:

ପ୍ରକାଶକ
ବୁକ୍ ପାବ୍ଲିଶିଂ କୋମ୍ପାନୀ
ଲିମିଟେଡ, ବାମଣ୍ଡା ।

——ଃଠଃ❋ଃଏଃ——

# ସୂଚିପତ୍ର ।

—ഥ∞:○:ഥ∞—

# ଶୁଦ୍ଧିପତ୍ର ।

| ପୃଷ୍ଠାଙ୍କ | ପଂକ୍ତି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୪ | ୧୬ | ଉଲ୍ଲଙ୍ଘ | ଉଲ୍ଲଙ୍ଘି |
| ୨୦ | ୧୬ | ଭଣ | ଭୃଣ |
| ୩୧ | ୧୩ | ଝରଣ- | ଝରଣ, |
| ୩୪ | ୧୨ | ଝୁଞ୍ଜର | ଝୁରଙ୍ଗ |
| ୩୬ | ୫. | ବେ | ଏବେ |
| ୨୨ | ୧ | ନବର୍ତିଲ | ନବର୍ତିଲ |
| ୪୪ | ୧ | ବକାଶ | ବକାଶେ |
| ୪୮ | ୧୨ | ଦୀପ୍ତ | ଦୀପ୍ତ |
| ୬୯ | ୧୩ | କାଲଗୁର୍ଣ୍ଣ | କାଲଘୂର୍ଣ୍ଣ |
| ୮୦ | ୩ | ରମମ | ରେମମ |
| ୮୬ | ୧୨ | ଚୁନେ | ଚୁମ୍ବନେ |
| ୯୦ | ୧୨ | — | ଷଣଦାନନ୍ଦଦାୟିନୀ |
| ୯୪ | ୮ | ପ୍ରାଙ୍ଗଣ | ପ୍ରାଙ୍ଗଣେ |
| ,, | ୧୬ | ହ୍ୱଳରେ | ବହ୍ୱଳ[illegible] |
| ୯୫ | ୧୮ | ମନ୍ୟର | ମନ୍ତ[illegible] |
| ୧୦୦ | ୬ | ସଙ୍କାଢ଼ୁଛି | ମର[illegible] |
| ୧୦୬ | ୪ | ଚାହୁଁଅଛି କା[illegible] | |
| | | ଲେ[illegible] | |

| | | | |
|---|---|---|---|
| ୧୪୬ | ୧୨ | ସୁନ୍ଦରଂ | ସୁନ୍ଦର |
| ୧୫୨ | ୧୧ | ସବବାଦ | ସର୍ବବାଧା |
| ୧୫୯ | ୩ | ଯେଗ | ଯୋଗେ |
| ୧୬୦ | ୩ | ଏଉ | ଏଣୁ |
| ୧୭୯ | ୯ | ସାଧାଗଣତଃ | ସାଧାରଣତଃ |
| ୧୮୨ | ୧୧ | ଥଛ | ଧାଙ୍ଗୀ |
| ୧୮୬ | ୧ | େ | ମୋହର |
| ୧୮୮ | ୧୬ | ସ୍ୱର୍ଣ୍ଣିଦୀ | ଜାହ୍ନବୀ |
| ୧୮୯ | ୧୮ | ” | ” |
| ୧୯୦ | ୧୬ | ଦଶନ | ଦର୍ଶନ |
| ୧୯୮ | ୮ | ଉବଔରସରେ | ସଧ୍ବବଘୀ ଗର୍ଭେ |
| ୨୦୩ | ୧୧ | ପ୍ରାଣମନୋରମା | ପରାଣ ତୋଷିଣୀ |
| ୨୧୧ | ୯ | ପଶ | ପାଶେ |
| ୨୧୩ | ୪ | ଗୈଠି | ଗୋଠି |
| ୨୨୨ | ୧୬ | ମଞ୍ଜି | ମଞ୍ଜୁ |
| ୨୩୦ | ୧ | କର | କରେ |
| ୨୩୫ | ୬ | ଝୁଠେକାଇ | ଝୁଠେକଇ |



ରାଜା ଶ୍ରୀମାନ୍ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ।

Pt.at Hitaishini E M Press

# ପିତରୌ !

ଦେବ !

ମାତୃହୀନ ଥିଲିମୁହିଁ , ତବକୃପା ବିନା
ନଥାନ୍ତା ଏ ଦେହମୋର , ( ପୁଣି ) ଜ୍ଞାନର ବିକାଶ;
ଅଜ୍ଞାନ – ଅନ୍ଧାରେ ମୋର ଦିବାକର ତୁମ୍ଭେ,
ଦେହରକ୍ଷା ପାଇଁ ପୁଣି ମୃତ-ସଞ୍ଜୀବନୀ
ଅର୍ପୁଅଛି ପିତଃ ତବ ଶ୍ରୀପଦ-କମଳେ
ଭକ୍ତି ଭାବେ ଗୀତକାବ୍ୟ ରୂପକୁଁ ଉତ୍ଥିତ;
ଦୟାକର :—

ମା !

ନାହିଁ ମୋର ମନେ , ପୁଣି ଡାକିନାହିଁ ତୋରେ
"ମା !" ବୋଲି, ଦୁର୍ଲ୍ଲଭ ସଦା ମୋହର ଭାଗ୍ୟରେ
ମା , ଏମୁଖେ ହଲାହଲ ଏ ଅମୀୟ ବାଣୀ ;
ଦେଖିବାକୁ ଦୁଃଖମୟ ଜୀବନମୋହର,
ଡାକୁଥିଲି ତବ ନାମେ ,ସ୍ନେହେ ମାମା ! ବୋଲି
ଉଷର ହୃଦୟେ ଦିବ୍ୟ ଶାନ୍ତି-ସ୍ୱରୂପିଣୀ
ମନୋଜ୍ଞା, ଷୋଡ଼ଶୀଲତା ତନୟାକୁ ମୋର ।
ମା ! ହଲାହଲ କେବେ ନୁହେ ଏ ବଂଶେ ପୋଷକ,

ମଉଳିଲା ଅକାଳରେ ଯେ ଗର ପରଶେ
ପ୍ରାଣତୋଷିଣୀ ଚମ୍ପା କୁସୁମକଳିକା;
ଅଧିଷ୍ଠିତା ଆଜି ସେହି ତବ ବାମକ୍ରୋଡ଼େ;
ପାଲିରଙ୍ଗ ଆନ ଛଳ ତନୟ ପାଇଁକି
ଭେଟିବ ଯେ କାଳେ ତବ ଶାନ୍ତିମୟ ଧାମ ;
ଆଶୀଷ ମା ! ପିତାସଙ୍ଗେ ତୋହର ତନୟେ
ମହାକର୍ତ୍ତବ୍ୟାଭିଷିକ୍ତ ! ହବ ସ୍ୱର୍ଗସିଂହାସନ;
ଫଳୁ ତବ ବାଣୀ, ମାତଃ ! ଏ ଦୁଃଖୀ ଜୀବନେ
ଦେବବାଣୀ ସମ; ଯେନ ଭକ୍ତିଉପହାର ।

ତୁମ୍ଭର
ଝୀକାପୁତ ବାବୁ

—◁ ❊ ○ ❊ ▷—

# ସଚ୍ଚିଦାନନ୍ଦ ଗ୍ରନ୍ଥାବଳୀ ।

## କାଦମ୍ବରୀ ।

### ପ୍ରଥମଖଣ୍ଡ ।

ପ୍ରସନ୍ନେ ବରଦେ ଦେବୀ ! ଉତ୍କଳ-ଭାରତୀ !
ଉତ୍କଳ- କମଳାକର-ପୁଣ୍ଡରୀକ ବ୍ରଜେ
ଉଦ୍ଭାସିତ ତବମୂର୍ତ୍ତି, ( ତବ ) ବୀଣାର ଝଂକୃତି
ଦିଗନ୍ତ—ବ୍ୟାପିଲା ପୁଣ୍ୟ ଉତ୍କଳ-ଗଗନେ ;
ତବ କର ପୋଥି ( ଦେବୀ ! ) ଥୁଅ ଉତ୍କଳ-ମଣ୍ଡପେ,
କିନ୍ତୁ ଗାଇବାକୁ ତହିଁ ନୁହଇ ଭାଜନ ;
ଗାଇବି ଅମିତାକ୍ଷରେ, କବି-କୁଳ-ଗୁରୁ
ବାଣ ଭଟ୍ଟ ଗଦ୍ୟ—ମଧ୍ୟ-ପ୍ରବନ୍ଧ-ଲେଖକ—
କାଦମ୍ବରୀ, ଗୀତି କାବ୍ୟ, ଦୟା କର ସତୀ!
ନରପତି-ନିର-ସମଭ୍ୟର୍ଚ୍ଚିତ - ଶାସନ
ଭୂପତି ଶୂଦ୍ରକ ନାମା ବଦାନ୍ୟଶେଖର
ରମ୍ୟା ବେତ୍ରବତୀ—ତଟ-ବିଦିଶା ନଗରେ

ଥିଲେ ଅଧିଷ୍ଠିତ ଦିବ୍ୟ ରାଜସିଂହାସନେ ।
ଉଦଧି-ମାଳ-ମେଖଳା ଭୂମି ଅଧିପତି ,
ଅମର ପାକଶାସନ ଯେ ଦୁଷ୍ଟ ଶାସନେ ;
ପ୍ରତାପାନୁରାଗ-ନତ ସମସ୍ତ ସାମନ୍ତ ;
ମନ୍ମଥ-ବିଜୟୀ ଯେହ୍ନେ ମନ୍ମଥ ବିଜୟୀ ;
ଶଙ୍ଖ ଚକ୍ର ସୁଲାଞ୍ଛିତ କର-କମଳରେ
ସାର୍ବଭୌମ ଅରିନ୍ଦମ କେଶବ ସଦୃଶେ ;
ଅପ୍ରତିହତ ଶକତି ଯେହ୍ନେ କାର୍ତ୍ତିକେୟ ;
ଅଥବା ସ୍ୱୟମ୍ଭୂ ? ଯେଣୁ ରାଜନ୍ୟ-ମଣ୍ଡଳ
ବିମାନତ ହୋଇଛନ୍ତି ପ୍ରଚଣ୍ଡ ପ୍ରତାପେ ;
ସତେକି ଜଳଧି? ଯେଣୁ ଲକ୍ଷ୍ମୀଙ୍କ ବସତି;
( ରତ୍ନପୂର୍ଣ୍ଣ ରାଜକୋଷ ରତ୍ନାକର ସମ ) ;
ଭଗୀରଥ-ପଥ-ଅନୁସାରୀ ଗଙ୍ଗାପରି ,
ସୂର୍ଯ୍ୟବଂଶ ଧ୍ୱଜ ଯେଣୁ ପଥ ପ୍ରବର୍ତ୍ତକ ,
ରବି ସମ ପ୍ରତିଦିନ ଉଦିତ-ସମୃଦ୍ଧି ;
ପଦଛାୟା ତଳେ ଯାର ସମସ୍ତ ଭୁବନ
ଆଶ୍ରୟ ଲଭଇ , ଯଥା ମେରୁ ପାଦାନ୍ତରେ ;
ଦାନବାରି — ଅର୍ଦ୍ଧେକର ଦିଗ୍ଗଜ ସଦୃଶେ
ପ୍ରଥିତ ମହତ ଯଶା ସେହି ନରରାଣ ;
ଅଦ୍ଭୁତ ବୟସେ ସଦା ନିବିଷ୍ଟ ମାନସ ;
ଅଶ୍ୱମେଧ ରାଜସୂୟ ଯାଗ ଅନୁଷ୍ଠାତା
ସର୍ବଶାସ୍ତ୍ରବିଦ ସେହି ଆଦର୍ଶ ନରେଶ,

ନୃତ୍ୟ ଗୀତ ଚତୁଃଷଷ୍ଠି ସୁକଳା ନିପୁଣ
ଶୌର୍ଯ୍ୟ ବୀର୍ଯ୍ୟ ଆଦି ଗୁଣେ ସଦା ଗୁଣବାନ ;
କାବ୍ୟାମୃତ ରସାଦର ଅନନ୍ତ ଅଗମ ;
ସହୃଦୟ ମିତ୍ରବରେ ଉଦୟଅଚଳ ;
ଧୂମକେତୁ ସମସଦା ବଇରୀ ନାଶନେ ;
ସମାଜ ଗଠନ ପାଇଁ ସଦା ଧୁରନ୍ଧର ,
ରସିକ ଆଶ୍ରୟ ଦାତା , ପୁଣି ଧନୁର୍ଦ୍ଧର ;
ସାହସିକ ମଧ୍ୟେ ଯେହ୍ନ ଯୌଚରେୟ ନିଶ୍ଚୟ ,
ବୈନତେୟ ପକ୍ଷେ ଯେହ୍ନ ବନତାନନ୍ଦକ
ପଣ୍ଡିତ ମଣ୍ଡଳେ ପୁଣି ଯେ ଏକ ଧୁରୀଣ ;
ଗୃପକୋଷ୍ଠି ମାଷଯୋଗେ ଅଥବା ଇଙ୍ଗିତେ
ପୃଥ୍ୱୀସମ, କୁଳାଚଳ—ଅରାତି—ଅଚଳ
ନିର୍ଜିତ କରିଲେ ସେହି କ୍ଷୁଦ୍ରକ ଭୂପତି ।
ସମଗ୍ର ଭୁବନ ଏକ ବିକ୍ରମେ ଆକ୍ରମି
ନିର୍ଭିନ୍ନ କରିଲେ ଯେହ୍ନ ଅରାତି ହୃଦୟ ,
ନରସିଂହରୂପେ ଦେବ ବାସୁଦେବ ଯଥା
( ତ୍ରିଭୁବନ ଆଚ୍ଛାଦିଲା ଯାଙ୍କ ପାଦଦ୍ୱୟ ) ।
ଅତି ଚିରକାଳୁଁ ମନ୍ଦ ନୃପତି ସମ୍ପର୍କେ
ଲଭିଥିଲେ ଯେ କଳଙ୍କ ପ୍ରତିଭୂ — ସଦନେ
ଲଭିଲେ ସେ ଦିଗ୍ବିଜୟୀ ଅରାତି-ଦମନ,
ଅସିଧାରା ଜଳେ ସ୍ନାତ ପୂତ ରାଜଲକ୍ଷ୍ମୀ ।
ବହୁ ଗୁଣ ଯୁକ୍ତ ସେହି ଶୂଦ୍ରକ ଭୂପତି

ନବସନ୍ତ୍ର ମନେ ଯାର ନ୍ୟାଯ୍ୟ ଧର୍ମ ଦମ ,
ଦ୍ୱାପରେ ଭଣନ୍ତି ଯେହ୍ନେ ଅନ୍ତକରାଣଙ୍କୁ,
ପ୍ରସାଦେ ଧନଦ ପୁଣି ପ୍ରତାପେ ବହ୍ନିଙ୍କ ,
ବଳେ ପ୍ରଭଞ୍ଜନ ପୁଣି ପ୍ରଜ୍ଞାରେ ଗୀଷ୍ପତି
ରୂପେ ଦେଖେ ଜିଣିଛନ୍ତି ମଦନ, ସବିତା;
କୃପାଜଳେ ପୂର୍ଣ୍ଣ ସଦା ଲୋଚନ-ସାରସ
ଲକ୍ଷ୍ମୀଙ୍କ ବସତି ; ବାଗ୍ମୀପ୍ରବର ରସିକ ,
ସୁନ୍ଦରନାରୀ-ପକ୍ୱବିମ୍ବ-ଲୋହିତ-ଅଧର
ଚୁମ୍ବିବାକୁ ଇଚ୍ଛେ ଯାର ମୁଖ ସୁଧାକର ।
ଏଣୁ ବିଶ୍ୱରୂପ—ଅନୁକାରି ନରଗଣ ,
ତୁମ୍ଭ ଭଗବତ ଙ୍କର ସତେ କି ସୋଦର ?
ମଦକଳକରୀ-କୁମ୍ଭ-ପାଟନ — ଗୁମ୍ଫିତ-
ମୁକ୍ତାଫଳ - ଦନ୍ତୁରିତ—ଅସି ଆଲମ୍ବନେ
ସୁଭଟ ଉର-କପାଟ କବଚଭନିସ୍ତ୍ରା
ମଦ ମତ୍ତ ଦାନବାରି ଆବର ଫୂତ୍କାର—
ଆସାର-ଉଲ୍ଲଂଘି ଶୂରକାଂକ୍ଷିଣୀ ରାଜଶ୍ରୀ
ଅଭିସାରେ ଲଭିଲେ ଯେ ଦିଗ୍ବିଜୟୀବାରେ ।
ପୁଣି ପତିସୋହାଗିନୀ ରିପୁ-ନାରୀକୁଳ
ବିରହ-ହୁତାଶ ଯାହା ଜଳଇ ଅନ୍ତରେ ,
କାରାବନ୍ଧ ତତଗତ ବନ୍ଦିଙ୍କ ପତିଙ୍କୁ
ନୃମଣି—ପ୍ରତାପାନଳ ଦହେଙ୍କ ନରଛେ ?
ଏକଛତ୍ର-ଅଧୀଶ୍ୱର ନ୍ୟାଯ୍ୟ-ଦଣ୍ଡଧର

ଯାହାଙ୍କ ଦୋର୍ଦ୍ଦଣ୍ଡବଳେ ଶାନ୍ତମୟୀ ଧରା ;
ମଖାଗ୍ନି ଉଦ୍ଭୂତ ଧୂମ- ଆନ ଅଶ୍ରୁପାତ
ନ ହୁଅଇ କେବେ ଯାଙ୍କ ଶାସିତ ସୁରାଷ୍ଟ୍ରେ ;
କଳଙ୍କ କେବଳ ମାତ୍ର କବଚେ କୃପାଣେ ;
ମାଳବ - ରମଣୀ - କୁଚ - ପୀଡ଼ନ - ଚଞ୍ଚଳ—
ତରଙ୍ଗିତ ବେତ୍ରବତୀ ସ୍ରୋତସ୍ୱତୀ ଯହିଁ
ଜହ୍ନୁ କର-କୁମ୍ଭଯୌତ ସିନ୍ଦୂର—ଅରୁଣା
ସମଦୃଶ୍ୟ ସନ୍ଧ୍ୟାଭ୍ରକୁ କରଇ କଳନା ;
କଳହଂସ କୁଳ କୋଳାହଳ ମୁଖରିତ—
ସେ ତଟିନୀ ତଟେ ରାଜେ ବିଦିଶା ନଗରୀ ।
ଶାସିତ ହୁଅନ୍ତେ ଧରା ଏକଚ୍ଛତ୍ର ତଳେ
ନିବର୍ତ୍ତିଲା ରାଜ୍ୟଭାର-ଚିନ୍ତା ମାନସରୁ;
ଦ୍ୱୀପାନ୍ତର- ସମାଗତ ରାଜନ୍ୟ ମଣ୍ଡଳ
କିରୀଟ-କୋଟି - ଘଟିତ ରତ୍ନ-ଦୀପ ଯୋଗେ
ନୀରାଜନା କରି କଞ୍ଜଚରଣ ଯୁଗଳ
ପୂଜିଲେ , ପ୍ରବୃଦ୍ଧ ବର୍ଷୀୟାନ ମନ୍ତ୍ରୀଦଳ—
ପରିବୃତ ସାର୍ବଭୌମ ଅରିନ୍ଦମ ବୀରେ ।
ସମାନ ବୟସ୍କ ବିଦ୍ୟାଲଂକାର ଭୂଷିତ
ପ୍ରଗଲ୍ଭ ଶାସ୍ତ୍ରଜ୍ଞ ପୁଣି ବିକ୍ରମୈକରସ
ରାଜପୁତ୍ର ଭାବ ରାଜଦଣ୍ଡ-ନିୟାମକ;
ବିନୟ ଗୁଣ ନିପୁଣ ବୟସ୍ୟଙ୍କ ସଙ୍ଗେ ,
ବଢ଼ିଥିଲେ ବାଲ୍ୟାମୋଦେ ଯେନ୍ରୂପ ଶୈଶବେ ,

ତେଜିଲେ ତୃଣ ପରାୟେ ସ୍ତ୍ରୈଣଭାବ ଏବେ ,
କେବଳ ଜିଗୀଷା ଯେଣୁ ହୃଦୟେ ସମ୍ପ୍ରତି ।
ମୃଗୟା ବିନୋଦେ ମୃଗ , ଶୂକର , ହର୍ଯ୍ୟକ୍ଷ ,
ମଦକଳ ଦନ୍ତାବଳ ଆବର ମହିଷ ,
ଶ୍ୱାପଦେ ସଂହାରି କଲେ ନିଃସତ୍ତ୍ୱ କାନନ ;
ପୁଣି କ୍ରୀଡ଼ା , ଶସ୍ତ୍ର , ଶାସ୍ତ୍ର କରି ଆଲୋଚନା
ସମଧର୍ମ୍ମ ସୁହୃଦ୍ୱର୍ଗେ ପରିବୃତ ହୋଇ
ଯାପିଲେ ଉଲ୍ଲାସେ କେତେ ଦିବସ ରଜନୀ ।
　ଏକଦା ରାଜନ୍ୟ ମେଳେ ଆସ୍ଥାନ ମଣ୍ଡପେ
ବସିଥିଲେ ନୃପବର ପାରିଷଦ ସହ ;
ପରାଚୀ-ଅଚଳ-ଦେଶ ଯେ କାଳେ ମିହିର
ନବୀନ-ନଳିନୀ-ଦଳ-ସମ୍ପୁଟ—ଭେଦନ ,
ଢାଳୁଥିଲେ ସ୍ନିଗ୍ଧଜ୍ୟୋତି ସଭାମଣ୍ଡପରେ ।
ବିଷଧର ବିଜଡ଼ିତ ଚନ୍ଦନ—ବଲ୍ଲରୀ-
ପରିବାମେ ବିଲମ୍ବିତ- ଉର୍ଦ୍ଧ୍ୱସ୍ଥଳ ଅସି
ଅଙ୍ଗନା ବିରୁଦ୍ଧ , ରାଜ-ଆଜ୍ଞା-ବିଗ୍ରହିଣୀ ,
ଶାନ୍ତିଦୀପ୍ତ-କଳହଂସ-ଧବଳ ଅଂଶୁକା ,
ମନ୍ଦାକିନୀ-ଉତ୍କଳିତ-ଐରାବତ-କୁମ୍ଭ-
ପରାୟେ ଚନ୍ଦନଲିପ୍ତ-ପୃଥୁଳ-ଉରଜା ,
ବେତ୍ରବତୀ ପ୍ରତିହାରୀ ରାଜାଙ୍କ ସମ୍ମୁଖରେ ,
ପ୍ରବେଶ ହୁଅନ୍ତେ , ଜାନୁପାତ କ୍ଷିତି ତଳେ ,
ନମିଲା , କହିଲା ପୁଣି ବିନମ୍ର- ବଚନେ ;

"ଦେବ !
ସ୍ୱର୍ଗ-ସମାକାଂକ୍ଷି-ଭୂପ-ତ୍ରିଶଙ୍କୁ ତାପସ-
ଶତମଖ ଶାପୁଁ ଚ୍ୟୁତ-ରାଜଲକ୍ଷ୍ମୀ ସମ
ଆଗତା ଦକ୍ଷିଣା ପଥୁଁ ଚଣ୍ଡାଳ କନ୍ୟକା ;
ପଞ୍ଜରସ୍ଥ ଶୁକଧରି ତବ ଦରଶନେ
ଉପସ୍ଥିତା ଦ୍ୱାରେ ତବ ନୃପତିଭୂଷଣ !"
କୁତୂହଳାକ୍ରାନ୍ତ ହୋଇ ନୃପତି-ପ୍ରବୀର
ଆଦେଶିଲେ ଆସିବାକୁ ମାତଙ୍ଗ କୁମାରୀ ;
ଅଶନି-ବାସିତ-କୁଳାଚଳ-ମଧ୍ୟବର୍ତ୍ତୀ
ମେରୁସମ ନୃପବର ନୃପତି-ଗହଳେ ;
ଦେଖିଲା ରୂପସୀ ଦୂରୁ, ଅଗ୍ରେ ସମାସୀନ
ମୌକ୍ତିକ-ଗୁମ୍ଫିତ-କଳଧୌତ ସିଂହାସନେ,
ହର-ହୁତାଶନ ଲଗ୍ନ-କୁସୁମ ଅଶୁଗ
ସଦୃଶେ ଶୋଭନ୍ତି ଦେବ ଆଭରଣ ଯୋଗେ ;
ଇନ୍ଦ୍ରନୀଳ ମଣିମୟ ପ୍ରାସାଦ କୁଟ୍ଟିମ-
ମସ୍ତକେ ଶ୍ୟାମାୟମାନ ନୃପତି-ନଖାଗ୍ର
ବିଭାସରି, ଯେହ୍ନେ ନୃପ-ଚରଣ-ଲୁଣ୍ଠିତ
ପରାଜସ୍ତ-ଅନୁତପ୍ତ ନରପତି ଙ୍କର,
ନିଶ୍ୱାସ ଉଚ୍ଛ୍ୱାସ ଯୋଗେ ଭଜେ ମଳିନତା ?
ବିସ୍ମିତ-ଭାସ୍ୱର ତନୁ, ବିମଳ କୁଟ୍ଟିମେ
ଦେଖି ରୂପବତୀ ଚିନ୍ତା କରିଲା ମାନସେ :—
ପ୍ରତିବିମ୍ବ ଛଳେ ଅବା ପ୍ରେମେ ବସୁମତୀ

କରୁଛନ୍ତ ଧର୍ମଧ୍ୱଜେ ହୃଦୟେ ନିହିତ ?
ନରପତି - ପ୍ରବୋଧନ ପାଇଁ ସେ ଚତୁରୀ
ସଙ୍କେତ ସ୍ଥଳରେ ସଭା ମଣ୍ଡପ କୁଟ୍ଟିମେ
କମଳ କୋମଳ କରଧୃତ ବେଣୁ ଦଣ୍ଡ-
ଯୋଗେ ସଙ୍କେତିଲ ସେହି ନୃପତି ଚପୃକଙ୍କୁ ;
ସଚକିତେ ନୃପଙ୍କର ନୟନ- କୁମୁଦ
ତପନ — ତେଜିଙ୍କସ ନୃପ ମୁଖୁଁ ଅପସର
ଆଶ୍ରିଲା ରମଣୀ—ମୁଖ—ପୂର୍ଣ୍ଣ ସୁଧାକରେ ,
ଅନଭ୍ୟସ୍ତ ଶବ୍ଦ ଯେହ୍ନେ କରଇ ଚକିତ
ଯୂଥପତି—ସମାଶ୍ରିତ ବନ୍ୟକରୀ ଯୂଥେ !
ସଞ୍ଚାରିଣୀ ଇନ୍ଦ୍ରନୀଳ-ପ୍ରତିମା-ପ୍ରତିମ
କୁଟ୍ଟିଶାଦର୍ଶୀ, କେଶିନଶର ଅବା ମଦନର !
ଶ୍ୟାମା ପୁଣି ଶ୍ୟାମବର୍ଣ୍ଣା , ହର ହୁତାଶନ-
ଦହ୍ୟମାନ ଫୁଲଧନୁ ଧୂମ—ଧୋରଣୀରେ ,
ମଳିନବରଣା ଯେହ୍ନେ କାମ—ସୁହାଗିନୀ !
ରଚି ଭାଲେ ଅଙ୍କପାଲ ଗୋରଚନା—ତିଳକ
ଇଶାନୁସାରିଣୀ କସ୍ତରୀ ବିଲୋଚନା
ଦେଖି କାତ୍ୟାୟନୀ ସମ ବହୁଛି ସୁଷମା ;
କାଞ୍ଚୀଦାମ-ଆଳବାଳ ଲତାଲୋମ ଗୁଛ
ତରଳ ଯୌବନ ଜଳେ ସଦା ବିକସ୍ୱର ;
ରକ୍ତାଂଶୁକେ ଆଚ୍ଛାଦିତ ସୁନୀଳ-ବସନା
କଳୁଅଛି ନୀଳୋତ୍ପଳ-ସ୍ଥଳି-ସନ୍ଧ୍ୟା ତପେ;

ଅକ୍ଷତ ରୂପ ସମ୍ପନ୍ନା ବନଭୂମି ସମ ।
ଅନୁଚର ସବୁ ଅର୍ଦ୍ଧ ଚଣ୍ଡାଳ ଦ୍ୱାରରେ
ବିନ୍ୟସ୍ତ କରନ୍ତି କଲଧୌତ—ପଞ୍ଜରିକା,
ଅଗ୍ରେ ଯାଇ ବର୍ଷୀୟାନ ପାଣ୍ଡୁର ମୂର୍ଦ୍ଧଜ
ଶୁକ-ପକ୍ଷଛାୟା ଯୋଗେ ଯା ହେମ—ଶଲାକା
ମରକତ ମଣି ଦ୍ୟୁତି ବହଇ ନିରତେ ।
ପ୍ରତିହାରୀ ସଙ୍କେତରେ ନୃପ ଚୂଡ଼ାମଣି
ଦେଖିଲେ ଦୂରରୁ ସେହି ମାତଙ୍ଗ କୁମାରୀ
ଚିନ୍ତିଲେ, ଅସ୍ଥାନେ କିପାଁ ଏରୂପ ଲାବଣ୍ୟ
ସୃଷ୍ଟି ହେଲେ ବିଧି ? ଅବା କଳ୍ପନା-ତୂଳୀରେ
ରଚିଲେ କି କାନ୍ତିମତୀ ରୂପସୀ ଲଲାମ ?
( କେତେ ମାନସେ ଘୃଣା ଚଣ୍ଡାଳ ପରଶେ ? )
ନୋହିଲେ କି ସମ୍ଭବଇ ଏକାନ୍ତ-ବିଭବ ?
କର—ସ୍ପର୍ଶ—କୃତ ଯେଣୁ କାନ୍ତି-ମ୍ଳାନକର ।
ପ୍ରଣମିଲା ରୂପବତୀ ରାଜାଙ୍କ ଚରଣେ
ଖସିଲା ଏକାଳେ କର୍ଣ୍ଣ—ପଲ୍ଲବାବତଂସ
ଏକାଳେ ପୁରୁଷ ନେଇ ସେ ଶୁକ-ପଞ୍ଜର
ସମର୍ପିଲା ରାଜାଙ୍କର ସମ୍ମୁଖେ ସାଦରେ;
ପ୍ରଗଲ୍ଭେ ବିନମ୍ରେ ପୁଣି କହିଲା ଏସନ—
"ଦେବ !
ସମସ୍ତ ଶାସ୍ତ୍ରଙ୍କ ପୁଣି ସୁନୀତି-କୁଶଳ
ପ୍ରଣୟ-କଳହ-ରୁଷ୍ଟ-କାମିନୀ-ପ୍ରମୋଦେ-

ଚତୁର ବୈଶମ୍ପାୟନ ଏଶୁକ ସମ୍ମୁଖେ-
ଅର୍ପିବାକୁ ସମାଗତା ଏଭର୍ତ୍ତୃଦାରିକା"
ରାଜାଙ୍କୁ ସମ୍ମୁଖେ ଦେଖି ସେ ଶୁକଚତୁର
ଆଶୀଷିଲା ସ୍ପଷ୍ଟାକ୍ଷରେ ମଧୁର ବଚନେ ;
ଶୁଣି ଶୁକ ମୁଖୁଁ ନୃପ ନିର୍ମଳ ଭାରତୀ
ସଚକିତେ ଚାହିଁଲେ ପ୍ରବୀଣ ମନ୍ତ୍ରୀଙ୍କୁ
(ଜ୍ଞାନେ ଯେହ୍ନେ ସୁରଗୁରୁ, ବୟସେ ବର୍ଷୀୟାନ)
'କୁମାର ପାଳିତ' ନାମ ନୀତି ଧୁରନ୍ଧର
"ମନ୍ତ୍ରିନ୍ !
ଆହାର, ମୈଥୁନ, ନିଦ୍ରା, ଭୟ ମାତ୍ରଜ୍ଞାନ
ଯେ ଶୁକପୋତକେ, ଦେଖ, ପ୍ରଗଲ୍ଭ ବଚନେ
ବିହଙ୍ଗମ ହେଲେ ସୁଦ୍ଧା ବର୍ଣ୍ଣ ଉଚ୍ଚାରଣେ
ସ୍ୱରେ ପୁଣି ମଧୁରତା ଅଶୀଷେ ଆବର" ।
ରାଜାଙ୍କ ବଚନେ ମନ୍ତ୍ରୀକୁମାର ପାଳିତ,
କହିଲେ ସସ୍ମିତେ ପୁଣି ବିନୟ ବଚନେ
"ନାହିଁ ବିଚିତ୍ର ଯେଣୁ ଜନ୍ମାନ୍ତର ଜ୍ଞାନ,
ସଂସ୍କାର-ଅଧୀନ ଦେବ ! ହୋଇ ଉଦ୍ବୋଧିତ
ସ୍ମୃତିପଥ-ସମାଶ୍ରିତ ହୁଏ ଶ୍ରୁତକଥା,
ହବ୍ୟବାହ - ଶାପ ଯୋଗୁଁ ବିକଳିତ-ଚିତ୍ତ—
ଶୁକ ଦନ୍ତାବଳ ଏବେ ଲଭନ୍ତି ଜଡ଼ତା" ।
ଏ କାଳେ ପଟହ ନାଦ ମଧ୍ୟାହ୍ନ ସଙ୍କେତେ
ତାର ଶଙ୍ଖଧ୍ୱନି ସହ ଶୁଭିଲା ମଣ୍ଡପେ ;

ଅଶୀତ ଅମ୍ବରମଣି ମଧ୍ୟମ ଆରୂଢ଼
ଜାଣି, କ୍ଷିତିପତି ଆସୁ ତେଜିଲେ ମଣ୍ଡପ ;
ବଦାନ୍ୟ ଲଭିଲେ ସର୍ବ ଅର୍ଚ୍ଚିତ ଭୂପତି ;
ଇଙ୍ଗିତେ ବୈଶମ୍ପାୟନ ସଙ୍ଗ-ଅନ୍ତଃପୁରେ
ପରିଚର୍ଯ୍ୟା ପାଇଁ ନୀତ ହେଲା ତତକ୍ଷଣେ ;
ଦେଖା ଆଗ୍ରହିଣୀ ସେହି ବିହଙ୍ଗରାଜକୁ,
ମଦମତ୍ତ ପରଭୃତ-ନୟନ-ଉଜ୍ଜ୍ୱଳ
କଷାୟ ମଧୁର ଦ୍ରବ୍ୟ ଜମ୍ବୂଫଳ-ରସେ ,
ପୁଣି ସିଂହ-ବିଦାରିତ ମାତଙ୍ଗ-କୂଳକା-
ବିନିଃସୃତ ରୁଧିରାର୍ଦ୍ର ମୋତି-ଦ୍ୟୁତି-ପ୍ରଭ
ଖଣ୍ଡିତ ଦାଡିମ-ବୀଜ, ପଚେଲିମ ଫଳେ
ତୋଷିଲେ ସାଦରେ ଦାସୀ ବନ୍ୟୁସ୍ୟା ସମ୍ବତେ ।
ସ୍ୱର୍ଣ୍ଣବେତ୍ର-ସମାଶ୍ରୟି ଅବନତ ଦେହ
ଜରା-ଧବଳିତ-ମୌଳି ଜରଦ୍ଧଂସ ପଣ୍ଡ
ସୁମନ୍ଦସଞ୍ଚାରି କୁଞ୍ଚେ ପଞ୍ଜର-ହସ୍ତରେ
ପଠାଇଲେ ଶ୍ରୀ ଶୁମ୍ଭୁକୁ ଶୁଦ୍ଧାନ୍ତ ଚାରିଣୀ ।
ଏ କାଳରେ କ୍ଷିତିପତି ଶୟନ ମଣ୍ଡପେ
ବସିଥିଲେ ଦୁଗ୍ଧଫେନ-ନିଭ ତଳ୍ପୋପରି ;
ଜିଜ୍ଞାସିଲେ ଶୁକବରେ, ସୁଧୀରେ ସାଦରେ—
" କେଉଁ ସ୍ଥାନେ ଜନ୍ମ ତବ ? କେବା ତବ ପିତା?
କିପରି ଲଭିଲ ? ଏହି ବଚନ ପଟୁତା ,
ଶୁକବର ! କିପରି ବା ଚଣ୍ଡାଳ ହସ୍ତରେ.

ହୋଇଲ୍ ପିଞ୍ଜର-ବଦ୍ଧ? ତେଜି ସ୍ୱାଧୀନତା,
କହ ଗୋଟି ଗୋଟି ଶୁକ! ନିବର୍ତ୍ତୁ ସଂଶୟ" !
ସବିନୟେ, ସାର୍ବଭୌମ କୌତୂହଳ ଜାଣି
ବିବୃତ କରିଲା ଶୁକ ଉପାଖ୍ୟାନ ଛଳେ।
ଭାରତ-ରସନା-ନିଭ ବିନ୍ଧ୍ୟ ମହାଟବୀ,
ବନ କରିଯୂଥପତି-ମଦଜଳ—ସେକ-
ସମ୍ବର୍ଦ୍ଧିତ ବିକସ୍ୱର ପାଦପ ଯହିଁରେ
କୁସୁମିତ ସୁଶୋଭିତ – ଉନ୍ନତ ଶିଖର
ତାରାଚ୍ଛନ୍ନ ଗଗନକୁ କରଇ କଳନା;
ବସନ୍ତ ଆଗମେ ଯହିଁ ନବ କିଶଳୟ
ବ୍ୟୋମ-ସଞ୍ଚାରିଣୀ ବନ ବିଦ୍ୟାଧରୀ-ପାଦ—
ଅଲକ୍ତେ ରଞ୍ଜିତ ପରି ଦିଶଇ ସୁନ୍ଦର ।
ଉପାନ୍ତେ ଦଣ୍ଡକାରଣ୍ୟ ଭୁବନ ବିଦିତ
ପୂର୍ବ ସାଗର-ଗାମିନୀ ଗୋଦାବରୀ ତୀରେ
ବିରାଜେ ଆଶ୍ରମ ମୁନି କୁମ୍ଭଯୋନିଙ୍କର
(ଦକ୍ଷିଣାଶାବଧୂ—ମୁଖ-ତିଳକ ସମାନ,
ଶାରଦୀୟା ତମସ୍ୱିନୀ ଉଜଳେ ଯା ତେଜେ);
ମଖାଗ୍ନି-ଉଦ୍ଭୂତ-ଧୂମ ତ୍ରେତାଗ୍ନି କୁଣ୍ଡରୁ
ତରୁଦେହେ ପୁଞ୍ଜୀଭୂତ କପୋତ କବ୍ବଳ;
ସନ୍ଧ୍ୟାତପ ବିଭୂଷିତ ପ୍ରତୀଚୀ ବନାଳି-
ପରିଧେୟ ତାପସ ବନ ଗୈରିକ ବସନେ;
ଭଗବତୀ ଲୋପାମୁଦ୍ରା ପତିସଧର୍ମ୍ମିଣୀ

ସମ୍ବର୍ଦ୍ଧିତ କରିଥିଲେ ଯେ ବୃକ୍ଷେ ବାଞ୍ଛନ୍ତେ
ରାମ-ତୀକ୍ଷ୍ଣଶର-ନିପାତିତ ସ୍ୱର୍ଣ୍ଣଚର —
ବହଳ ରୁଧିର-ସିକ୍ତ ଆବାଳ ଯୋଗୁଁ କି
ରାଗାନୁବନ୍ଧେ ନିର୍ଗତ ପାଟଳ ପଳାଶ
ବିଚ୍ଛୁରିତ ବିଭାସିତ କରନ୍ତି ବନକୁ ;
ସତୀ-ମୌଳିମଣି ଦେବୀ ରାମ ସୁହାଗିନୀ
ତୋଳୁଥିଲେ ଯେ କାଳରେ ବନ୍ୟପୁଷ୍ପରାଜି
ପବିତ୍ରୀ ଉଷା-ଅରୁଣ-ଶ୍ରୀକର ପରଶେ
ରଞ୍ଜିଲା କି କିଶଳୟେ ଏ ମଞ୍ଜୁଳ ରାଗ ?
ଯେଣୁ ସତ୍ୟବ୍ରତ ରାମ ପ୍ରତିଜ୍ଞା ପାଳନେ
( ପିତୃଆଜ୍ଞା ପାଳନରେ ଯେ ଏକ ଧୁରୀଣ )
ଦଶମୁଖ-ରାଜଲକ୍ଷ୍ମୀ ବିଭ୍ରମ ବିନାଶୀ
ମୈଥିଳୀ ସହିତେ ପୁଣି ସୌମିତ୍ରି ଅନୁଜେ
ପରିବୃତ ହୋଇ ଚୀର କଷାୟ ବସନେ
କୁଟୀର ବିରଚି ଏଥି ଥିଲେ ଦାଶରଥି ;
ଅଦ୍ୟାପି ସେ ବନେ ଭ୍ରମନ୍ତି ଗଳିତ ବିଷାଣ
ମୈଥିଳୀ-ପାଳିତ ଜରା ଜୀର୍ଣ୍ଣ-କୃଷ୍ଣସାର ,
ମୁଞ୍ଚନ୍ତି ଲୋତକ ପୁଣି ତ୍ୟଜନ୍ତି କବଳ
ଶୁଣନ୍ତି ଯେ କାଳେ ନବ ଦମ୍ଭୋଳି-ନିର୍ଘୋଷ
ସ୍ୱର ସେହି ଶତମଖ-ଅରାତି—ବିଜୟୀ —
ବ୍ରହ୍ମାଣ୍ଡ ବିବର ବ୍ୟାପି କୋଦଣ୍ଡ—ଟଙ୍କାର
ଶୁଣି ଶୂନ୍ୟମନେ ଅଶ୍ରୁ-ଲୁଳିତ-ଲୋଚନେ;

କୁଟିଳ କପଟୀ ଏଥି ମାରୀଚ ମାୟାବୀ;
ଭସ୍ମାବୃତ ବହ୍ନିସମ, କନକ—କୁରଙ୍ଗ
ମାୟାଜାଲେ ଦେବଦ୍ରୋହୀ ଛଳିଲା ଜାନକୀ;
ଜଗତବାସିନୀ ଯହିଁ ଅଦ୍ୟାପି ଉଚ୍ଛଳ-
ଭକ୍ତି ବହ୍ନିଶିଖା ଯେହ୍ନେ ଜନକ ତନୟା
ମୂର୍ତ୍ତିମତୀ ସବ୍ବୋଭୁଟେକ ଦେଖନ୍ତି ଅଗ୍ରହେ ।
ସେ ବିପିନେ ବନଚରୀ-ବିଲାସ-ଦର୍ପଣ
ପମ୍ପାନାମେ ପଦ୍ମାକର ବିସ୍ତୃତ ବିମଳେ ;
ଶବର କାମିନୀ କୁଚ-କଳଶ—ଲୁଳିତ—
ବିକଚ-କମଳ-ମଧୁ ନିସ୍ୟନ୍ଦ-ଚନ୍ଦ୍ରକ
ମାର୍ତ୍ତଣ୍ଡ ପରଶେ ଶଙ୍କା ଯହିଁ ଉପୁଜାଏ ;
ସୁବିସ୍ତୀର୍ଣ୍ଣ ଜଳରାଶି ଦିଗନ୍ତ—ବିସ୍ତାର
ଅମ୍ବୁରୁହ—ମଧୁପାନେ ପ୍ରମତ୍ତ କାଦମ୍ବ-
ଦମ୍ପତି ସଙ୍କୁଳେ ପୁଣି ସଦା ମୁଖରିତ
ଫୁଲ୍ଲିତ ବ୍ରଜକୁମାରୀ—ଉରଜ-ଚନ୍ଦନ—
ଧୂଳି-ଧବଳିତ-ଭଙ୍ଗେ ଅପୂର୍ବ୍ବ ସୁନ୍ଦର,
ଜଳକ୍ରୀଡା—ସୁହାଗିନୀ ବନଦେବୀ କୁଳ-
ଶ୍ରୀଅଙ୍ଗ—ପରଶେ ଯାର ଦିବ୍ୟ ଅମ୍ବୁରାଶି
ସୁଶୋଭିତ, ସୁରଭିତ ପଙ୍କଜ-ପରାଗେ ;
ଫୁଲ୍ଲିତ ଅଶ୍ରାନ୍ତି-ତର ଅପାର—ଉପେକ୍ଷି
ନୀରେଶ୍ବୃତି-ସମୁଡ୍ଡୀନ ସାରସ-କାଦମ୍ବ
କ୍ରୌଞ୍ଚ, ଚକ୍ରବାକ ଆଦି ଜଳ ବିହଙ୍ଗମ—

ପକ୍ଷପୁଟ-ବିନଃସୃତ ଜଳଧାର ସେକେ
ପଲ୍ଲବିତ ପୁଷ୍ପବନ୍ତ ହୁଅନ୍ତି ଅକାଳେ ;
ଅବତୀର୍ଣ୍ଣ-ଅମ୍ବୁଧାର-ବାରିଦ - ସମାନ
ବହଳ-ତମାଳ-ମ୍ଲାନ ବନ କରିଯୂଥେ
ସନ୍ତତ ଅପୀତ ଯାର ବିମଳ ସଳିଳ ;
ଫୁଲ୍ଲ-କୁବଳୟ- ପ୍ରଭ-ଶ୍ୟାମ-ସ୍ନିଗ୍ଧଛବି
ରଥାଙ୍ଗ-ମିଥୁନ ମୂର୍ତ୍ତିମନ୍ତ-ସ୍ମରଶାପ—
ପମ୍ପେ ସେ ସରପ୍ରାନ୍ତେ ବିହରନ୍ତି ମୁଦେ
ସେ ସର-ପଶ୍ଚିମ-ତୀରେ , ବୃଦ୍ଧ ରଘୁବୀର—
ବିକ୍ରମ-ପରୀକ୍ଷା-ସାକ୍ଷୀ ଜୀର୍ଣ୍ଣ ସପ୍ତତାଳ-
ଉପାନ୍ତେ ବିରାଜେ ଜରା ଶାଳ୍ମଳୀ ପାଦପ ;
ମଦୋତ୍କଟ ଦିକ୍‌କୁଞ୍ଜର-ଶୁଣ୍ଡ ଦଣ୍ଡୋପମ
ଭୀମ ପୁଣି ଦୀର୍ଘକାୟ ଜରଦଜଗରେ
ବେଷ୍ଟିତ ପାଦପ ତଳ ଆଲବାଲାୟିତ ;
ତୁଙ୍ଗ ସ୍କନ୍ଧେ ବିଲମ୍ବିତ ଉରଗ-ନିର୍ମୋକ
କଳୁଅଛି ଉତ୍ତରୀୟ ଧବଳ ଅଂଶୁକ ;
ଧମନୀ-ସମାନ ଲତା-ବେଷ୍ଟିତ ଶରୀର ;
ପୁରାଣ ପାଦପ ଅବା ପତନ-ଭୟରେ
ଗଗନରେ ସ୍କନ୍ଧ-ଲଗ୍ନ ଶାଖା-ପ୍ରସାରଣେ ?
ପ୍ରଳୟ କାଳ ତାଣ୍ଡବ-ପ୍ରସାରିତ ଭୁଜ
କଳ୍ପି ନଟ ଛୁଞ୍ଚିବାକୁ ସତେକି ଉଦ୍ୟତ ?
ଇତସ୍ତତ ପରିପୀତ-ସାଗର-ସଳିଳ

ଗଗନ ତଳ—ସଞ୍ଚାରୀ ପବନ ରଥ ପର
ଶାଖାନ୍ତେ ନିଲୀୟମାନ-ଜଳଦ ପଟଳ
ଅନ୍ତର୍କରେ ଉତ୍କଣ୍ଠ ଅମ୍ବୁଭରାଳସ ।
ପ୍ରାଚୀ-ଅତିକ୍ରମି ପୁଣି ଘର୍ମାକ୍ତ , ବଶ୍ରାନ୍ତ
ରବି-ରଥ-ତୁରଙ୍ଗମ-ଘୋଣା ପ୍ରପତିତ
ବିଷଦ-ଫେନପଟଳ-ସମ ତୁଳାଗ୍ରି
ସୁଶୋଭିତ କରଇସେ ଶାଳ୍ମଳୀ ଶିଖରୁ ।
ବନ-କର—ଗଣ୍ଡ-କଣ୍ଡୂୟନ—ଲଗ୍ନ-ମଦ—
ନିଲୀନ-ମଧୁପ-ମାଳା ସୁଦୃଢ଼-ନିଗଡେ
ବନ୍ଧନେ-ନିଶ୍ଚଳ କିବା ପୁରାଣ-ପାଦପ ?
ଯା କୋଟରୋଦରେ ପୁଣି ପଲ୍ଲବ-ଅନ୍ତରେ
ସ୍କନ୍ଧ-ସନ୍ଧି-ବନ୍ଧେ , ଜୀର୍ଣ୍ଣ ବଲ୍କଳ-ବିବରେ
ନାନାଦେଶୁଁ ସମାଗତ ବିହଙ୍ଗ ନିଚୟ
ନିର୍ଭୟେ ଅଛନ୍ତି ରଚି ଆପଣା ନୀଡକୁ ।
ପତନ୍ତି ଜହଲେ ସେହି ମହାଦ୍ରୁମ ଶାଖା
ଅବିରଳ ସୁକୋମଳ ସ୍ନିଗ୍ଧଦଳ ଶ୍ୟାମ ।
ଆହାର ସନ୍ଧାନ୍ତ ପାଇଁ ଯେବେ ଶୁକକୁଳ
ନୀଡ ତେଜି ଶୂନ୍ୟମାର୍ଗେ ଯାନ୍ତି ନାନାଦେଶେ
ବିଡ଼ମ୍ବିତ କରି ଶୁକ୍ଲ ପକ୍ଷ-ପନ୍ତ୍ର-ଯୋଗେ
ସଞ୍ଚାରିଣୀ ଶ୍ୟାମଳିକ-ମାରକତ-ସ୍ଥଳୀ ।
ନାନାବର୍ଣ୍ଣେ ସୁରଞ୍ଜିତ ଇନ୍ଦ୍ରଚାପ ସମ
ପଂକ୍ତି ଧରି ବର୍ଣ୍ଣୋତ୍ସବେ ଯେକାଳେ ବିହଙ୍ଗେ

ମାର୍ତ୍ତଣ୍ଡ-କର-ପ୍ରଖର-ପ୍ରତାପ-ତାପିତ
ଅଧୋମୁଖ, ପକ୍ଷପୁଟେ ବିଶ୍ରମ୍ଭ ମଧ୍ୟରେ ;
ସେ କାଳେ ବାସବ-ମଦମତ୍ତ-ଦନ୍ତାବଳ—
ଉନ୍ମୂଳିତ , ବିଗଳିତ ବ୍ୟୋମ-ତରଙ୍ଗିଣୀ—
ପଦ୍ମିନୀ-ଦଳ ଶଙ୍କା ମନେ ଉପୁଜାଏ ।
ଅହାରାନ୍ତେ ବାହୁଡ଼ିଲେ ଦିନାନ୍ତେ କୁଳାୟେ
ନାନା ଫଳ ରସେ ପୁଣି କଲମ ଉଦରେ
ତରୁଣ ରୁଧିରାରୁଣ ଦୀପ୍ତି - ନଖ-କୋଟି—
ପାଟଳ ସ୍ୱଚଞ୍ଚୁ ପୁଟେ କ୍ରୋଡାନ୍ତ ଶିଶୁଙ୍କୁ
ଅପତ୍ୟାନୁରାଗେ ତୋଷି ଯାଆନ୍ତି ଶବଂସୀ ।
ସେ ବୃକ୍ଷ କାଣ୍ଡ କୋଟରେ ମୋ ବୃଦ୍ଧା ଜନନୀ—
ସଙ୍ଗେ ପିତା, ଜାତ ରତ ଅନ୍ତିମ ବୟସେ ,
ପୋଷିଥିଲେ ମୋତେ ଅହା! ବାତ୍ସଲ୍ୟେ ଏକାକୀ ;
ହେଲ ଯେଣୁ ମାତାଙ୍କର ଜୀବନ ଉଦ୍ଗାର ;
ପ୍ରସବ ବେଦନା ସହି ନପାରି ଜନନୀ
ତେଜିଲେ ଏମର୍ତ୍ତ୍ୟଧାମ ମୋତେ ଏକା କରି
ଜାୟା-ବିୟୋଗ-ବଧୂର ବୃଦ୍ଧତାତ ମୋର
ଶୁକ-କପୋତ-ମୟୂର—ନୀଡ-ନିପତିତ-
ଶାଳ ମଞ୍ଜରୀ , ତଣ୍ଡୁଳ କଣା, ତରୁ ମୂଳୁଁ
କୋମଳ-ଗର୍ଭଶିଥିଳ—ପ୍ରସବ ବନ୍ଧନ—
ସମ କୋମଳ ଦୃଢ଼ିତ ଅଗ୍ରଚଞ୍ଚୁ ପୁଟେ
ଅହରି , ଆହାର ମୋତେ ଦେଇ ସମାଦରେ

ଭୁକ୍ତ ଅବଶେଷ ମାତ୍ର କରନ୍ତୁ ଭୋଜନ ।
ଏକଦା ପ୍ରଭାତ ସନ୍ଧ୍ୟା ଶୀଗରକ୍ତ—ନଟେର
( ପଦ୍ମ-ମଧୁ-ରକ୍ତ—ପକ୍ଷସମ୍ପୁଟ ସୁରାଣ
ରାଜହଂସ ଶ୍ରେଷ୍ଠ ଯଥା ସ୍ୱର୍ଣ୍ଣଦୀ ପୁଳିନ
ଧୀରେ ଧୀରେ ଅବତରେ ପଶ୍ଚିମ ସାଗରେ)
ଗମୁଥିଲେ କଳାନିଧି କୁମୁଦ ବାନ୍ଧବ ,
ରଙ୍କୁରୋମରାଜି ସମ ଦିକ୍ ଚକ୍ରବଳୟ
ବିଚ୍ଛୁରିତ କରିଥିଲା ଗଗନସୀମାକୁ
ଯୋତ ସଂଯାମିକ ଅଶା କୌବେରୀ—ତିଳକ
ଧ୍ରୁବ ପରିକ୍ରମି ତେବେ ସପ୍ତର୍ଷି ମଣ୍ଡଳ
ସନ୍ଧ୍ୟା—ବନ୍ଦାପନା ପାଇଁ ମାନସ ତୀରକୁ
ଗମିଲେ ପ୍ରକାଶି ଦିବ୍ୟ ଜ୍ୟୋତିର୍ମ୍ମୟ ପୃଷ୍ଠ;
ତଟଗତ ବିଘଟ୍ଟିତ ମୌକ୍ତିକ—ପ୍ରସୂତ —
ବିଗଳିତ ବିପ୍ରକୀର୍ଣ୍ଣ ମୁକ୍ତା—ଧବଳିତ
ଜଳଧି ପୁଳିନ ସମ ପ୍ରତୀଚୀ ଗଗନ
ବିଭାସିଲା, ପାଣ୍ଡୁବର୍ଣ୍ଣ ଋକ୍ଷାବଳି ଯୋଗେ ;
ଜୀବାଂଶୁ-ଗ୍ରଥିତ-ଦେହ ପ୍ରବାଳ—ଅରୁଣ
କୋମଳ ପଲ୍ଲବକରେ ସେକାଳେ ବିଟପେ
ଉଦ୍ଦେଶି ଉଦୟଗିରି—ଶେଖର—ମଣ୍ଡନ ,
ଅର୍ପୁଥିଲେ ହିମଧୌତ ବୃନ୍ତ ବିଗଳିତ
କୁସୁମ—ଅଞ୍ଜଳି ଦେବ ଦିବାକର—ପଦେ;
ବନଦେବୀ—ସୌଧାଶ୍ରିତ ବନସ୍ପତି ଶାଖା—

ନୀଳୀକୃମାନ—କପୋତ—ସ୍ତବ—ଅନୁକାରୀ
ରାସଭ—ରୋମ—ପାଣ୍ଡୁର ଧର୍ମ୍ମ—ଧ୍ୱଜ—ସମ
ହୋମାଗ୍ନି—କୁଣ୍ଡ—ଉତ୍ଥିତ ଧୂମ—ଲେଖାବଳୀ
ଅଗ୍ରହତ କରୁଥିଲା ତପୋବନ ସ୍ଥଳୀ ;
ବନ—ମହିଷ—ରୋମନ୍ଥ—ଫେନ—ବିନ୍ଦୁ-ବାହୀ
ଏକାଳରେ ସୁଶୀତଳ ପ୍ରଭାତ — ପବନ
ବନଚରୀ—ରତିସ୍ୱେଦ-ବିନ୍ଦୁ ଅପହାରୀ,
କମ୍ପିତ ପଲ୍ଲବ—ଲତା—ନାଟ୍ୟ-ଦୀକ୍ଷାଗୁରୁ
ଭେଟୁଥିଲା ଅଳଙ୍କାଳେ କୁସୁମ ଆମୋଦ ।
କମଳ-ବନ—ପ୍ରବୋଧ-ମଙ୍ଗଳ-ପାଠକ,
ଭ୍ରମର—ମାତଙ୍ଗ-ଗଣ୍ଡ-ଅଳଂକାର ରୂପୀ,
ବିକସିତ କୁମୁଦିନୀ—ମକରନ୍ଦ ଯୋଗେ
ସମୃଦ୍ଧ ପକ୍ଷସମ୍ପୁଟେ ମିଳିନ୍ଦ — କଦମ୍ବ
ବନ୍ଦିଲେ ପ୍ରଗଲ୍ଭେ, ପୁଣି କଷାୟ ଲୋଚନ
ଉଷର — ଶଯ୍ୟା—ଧୂସର-କ୍ରୋଡ ରୋମରାଜି
ବନଚର କୃଷ୍ଣସାର ଉତ୍କଟ କୁହାଟ
ମୁଖରିତ କରୁଥିଲା ପମ୍ପାସର — ତୀର ।
ଏକାଳେ ପ୍ରାଚୀ ଭେଦି ଦେବ ଦିନମଣି
କ୍ରମେ ଆଶାମୁଖ ପୋଛି ଶ୍ରୀକର ପରଶେ
ସର-ତୀର-ତରୁଶାଖେ ପୋଛିଲେ କାକର ;
ସେକାଳେ ଅଶ୍ରୁତ ପୂର୍ବ ମହା କୋଳାହଳ
ଗିରି-ଦରୀ-ସୁପ୍ତ ସିଂହ—ଗର୍ଜ୍ଜନ ଅବର

ମିଶି ତହିଁ ବନ୍ୟ-ଘୋଣି-ଘୋଣାର ଘର୍ଘର ,
ଉଠାଇଲା ଚରାଚରେ ଆରଡ଼ ବିଶେଷ ;
ସେ ଶବଦ ଶୁଣି ଭୀତହେଲେ ବନଦେବୀ ;
ପ୍ରଳୟ-ସମୟ-ଶଂସୀ ସେ ଶବ୍ଦ ଭୈରବ
ଶୁଣି , ତରୁ ଉତ୍କର୍ଣ୍ଣିତ ଡାଳ-ପକ୍ଷ ପୁଟେ
ପଶିଲା ଲଦ୍ଧ୍ୱବସ୍ତ୍ରଲେ ପ୍ରତୀହାର ଅଗେ ;
ଶୁଣିଲା ମୃଗୟୁଙ୍କର ବିଷମ ଜୁହାଟ ;
ଶୁଭୁଥିଲା , " ଏହି ପଥ କରିଯୂଥ-ପତି—
ବିଲୁଳିତ କମଳିନୀ-ସ୍ନିଗ୍ଧ ପରିମଳେ
ଆମୋଦିତ , ଏଣେ ନୋଡ଼ଗୁଳ-ବିତାଡ଼ିତ
ଭଦ୍ରମୁସ୍ତା ରସାମୋଦ , ପୁଣି ଏହିସ୍ଥାନେ
କୁଞ୍ଜର-କଳଭ-ଭଗ୍ନ ଶଲ୍ଲକୀର ଗନ୍ଧ
ପ୍ରବାହିତ ହେଉଅଛି ମଳୟ ମାରୁତେ ;
ସ୍ୱଚ୍ଛନ୍ଦ-ବିହାରୀ ବନ-ମହିଷ-ବିଷାଣ—
ବିତାଡ଼ିତ ବାମଲୂର-ଧୂଳି ଧୂସରିତ
ଧନ୍ୱନ୍ତରି ତୃଣ—କୋଟି ଦେଖ ମଳୀମସ ,"
ମୃଗୟୁ-ବାହିନୀପତି-କାର୍ମ୍ମୁକ ଟଙ୍କାର
କ୍ଷଣେ କ୍ଷଣେ କରୁଥିଲା ସ୍ତବ୍ଧ ବନସ୍ଥଳୀ ;
ଶୁଭୁଥିଲା ପୁଣି ସେହି ମୃଗୟୁ ଗହଳୁଁ ,
ଉଠାଇଲା ମନେ ଯାହା ବିଷମ ଆତଙ୍କ ;
ସାରମେୟ ମୁକ୍ତିବାକୁ ନିଗଡ-ବନ୍ଧନୁଁ
ସେନାନୀ ଦିଅନ୍ତି ଆଜ୍ଞା ଅନୁଚର ଦଳେ,

ନିର୍ଦ୍ଦେଶିଲ ଯେଣୁ ସ୍ୱାମୀ ମୃଗେନ୍ଦ୍ର ପୀଡ଼ିତ
ମଦୋତ୍କଟ ଯୂଥପତି ବାରଣ ବୃଂହିତ ;
କହିଲ ଗମ୍ଭୀରେ ପୁଣି ବାଗୁରିକ ପ୍ରତି
" ଏହି ଦେଖ ମୃଗଯୂଥ , ବନଗଜ କୁଳ ,
ବନ ମହିଷ—କଦମ୍ବ ! ବରାହ ସଂହତି !
କରି—ମୁକ୍ତା—ଦନ୍ତୁରିତ ମୃଗପତି—ମାର୍ଗ
ରୁଧିର—ଅଲକ୍ତ—ପଦ—ପଟଳ—ପାଟଳ
ଚିହ୍ନାଇ ଦେଉଛି ଆରେ ଏଦକ୍ଷ ପଦାଙ୍କ' ?
ଅନୁସର ଦ୍ରୁତପଦେ ବାଗୁରା ହସ୍ତରେ !
ଅଲୋଲ କାତରତର ତରଳ ତାରକ—
ରୁରୁପତି କୃଷ୍ଣସାର କରୁଣ କୂଜିତ !
ନଶାର ତୁଷାର—ଅଦ୍ରି ଶାର୍ଦ୍ଦୂଳ ଭୂତଳେ
ଦେଖ ପୁରୋଭାଗେ ତବ ବାଙ୍କ ପଦ୍ଧତି "
ମୃଗାମ୍ବୁ ଶର ଜିହ୍ମିତ ଗଜଯୂଥପତି—
ପ୍ରଣୟିନୀ—ଅନୁଗତ କଲଭ ଚିତ୍କାର ,
ପବନ ଧୂନନେ ପୁଣି ତୀକ୍ଷ୍ଣ ଅସି ଧାରା
କ୍ୱଣିତ ; ବନାନ୍ତ ବ୍ୟାପି ସାରମେୟ ରବ
( ଶାନ୍ତିର ବିରୋଧୀ ସଦା , ତାପସ ଆଶ୍ରମେ )
ଘନ୍ଧାଉଁ ଥିଲା ନୃମଣି! ବିଷମ ଚହଳ ;
ନିବର୍ତ୍ତିଲେ କ୍ଷଣକ୍ଷଣେ ଦେବ ! କୋଳାହଳ
( କ୍ଷୁଭିତ ଜଳଧି , ଯଥା ଝଡ଼ ଅପଗମେ );
ନିଃଶେଷ ବର୍ଷଣ ମୂକ ମେଘଖଣ୍ଡ ପରି

ନିସ୍ତବ୍ଧ ହୋଇଲା ସେହି ତପୋବନ ସ୍ଥଳୀ ।
ନିବର୍ତ୍ତିଲା ମନୁଷ୍ୟଙ୍କ ହୋଇ କୁତୂହଳୀ
ଦେଖିଲେ କୋଠରୁ ଯାହା ସଶଙ୍କ ମାନସେ
ଅଦ୍ୟାପି ଜନ୍ମାଏ ମୋର ହୃଦୟେ ପ୍ରକମ୍ପ !
ମୂର୍ତ୍ତିମନ୍ତ କାଳରାତ୍ରି ? ଅବା ଅନ୍ଧକାର ?
ମୂର୍ତ୍ତିମନ୍ତ ଅମଙ୍ଗଳ ? ଅବା ପ୍ରେତପତି ?
ରସାତଳୁଁ ସମାଗତ ଅଥବା ସୁମାଳୀ ?
ଅଶେଷ ଦଣ୍ଡକାରଣ୍ୟ-ବାସୀ ମୁନିଜନ-
ଅଭିଶାପ ଜନ୍ମମନ୍ତ ପରାୟେ ଦୁର୍ଦ୍ଧର୍ଷ !
ଉତ୍ପାତ ଦେବତା ସମ ଦେଖିଲେ ସଭୟେ ,
ଜନ୍ମାନ୍ତରାଗତ ଏକଲବ୍ୟର ପରାୟେ ।
ନବ-ମଦ-ବିମଣ୍ଡିତ କରୀନ୍ଦ୍ର-ପୋତକ—
ଭାଲପଟେ ଅଙ୍କୁରିତ ରୋମ ଗୁଚ୍ଛ ସମ ——
ଶ୍ମଶ୍ରୁଳ , କୁଟିଳ କେଶ ଆସ୍କନ୍ଧ-ଲମ୍ବିତ ;
ଅଚିର-ଆହତ ମଦମତ୍ତ ଦନ୍ତାବଳ-
କପୋଳ-ସୃହୀତ-ମଦ, ଅଗୁରୁ ସମାନ
ପ୍ରଲେପିତ ଅଙ୍ଗରାଗେ ପରିମଳ ପ୍ରିୟ —
ମିଳିନ୍ଦ ସେବିତ ସେହି ମୃଗୟୁ ପତିକୁ ;
ଶିଳା ସମ ବିସ୍ତାରିତ ଦୃଢ଼ ବକ୍ଷସ୍ଥଳେ
ହରିଣ-ରୁଧିର—ବିନ୍ଦୁ ସଙ୍ଗେ ସ୍ୱେଦ-କଣା
ଯେସନେ ଗୁଞ୍ଜାଫଳ ମିଶା ମୁକ୍ତା ଆଭରଣେ
ମଣ୍ଡିତ, ଗ୍ରୀବାରେ ପୁଣି ଗ୍ରୈବେୟକ ପରି,

କରୀନ୍ଦ୍ର-ମଦ-ମଳନ ପୃଥୁଳ କର୍କଶ
ଅଲ୍ଲନ ଊରୁଯୁଗଳ , ଲକ୍ଷାରସାରୁଣ
କୌଷେୟ ବସନେ ବଦ୍ଧ ପ୍ରସୃତ ପର୍ଯ୍ୟନ୍ତ ;
ଶାଦ୍ବଲ ଶ୍ୟାମଳ ଶସ୍ୟ-ବୀଥିକା-ସଂହାରୀ
ବୃଦ୍ଧିଶୀଳ—କୃଷ୍ଣସାର— ଜଠର — ଛେଦନ—
ଅଳକ୍ତ—ରୁଧିରାରୁଣ—କଙ୍କାଳ ଦାମ୍ଭିକ
ବିଷମ ବୈଧବ୍ୟ ଦୀକ୍ଷା ଦାନେ ଏଣୀଗଣେ
ସୁଚତୁର ଶ୍ବାନ ଅନୁଗତ ଚମୂପତି
ମୃଗୟୁ ବାନ୍ଧବ ସଙ୍ଗେ ଆସଇ ଅଦୂରେ
ବିଦ୍ରୁତ ମାତଙ୍ଗ ନାମେ ମୃଗୟୁ ସେନାନୀ ;
ଅଜ୍ଞାନମଗ୍ନ ଜୀବନ ସାଧୁ ବିଗର୍ହିତ ,
ନରମାଂସ ଉପହାର ଯାଦେବୀ—ପୂଜନେ ,
ନିସ୍ତା କ୍ରୂର କାର୍ମୁକେ, ସହାୟ ସାୟକେ
( ମୁକ୍ତ ଯାର ବିଷଦଗ୍ଧ ଭୁଜଙ୍ଗ ପରାଏ )
ଶାର୍ଦ୍ଦୂଳ ସହ ସହବାସ, ଚୌର୍ଯ୍ୟରେ ଜୀବନ,
ବିଷଧର—ଫଣା—ମଣି ଭୂଷଣ ଯାହାର
କରମଦ-ଅଙ୍ଗରାଗ, କାନନ ନିବାସ
କ୍ରମେ କ୍ରମେ ଆସି ସେହି ଶାଳ୍ମଳୀ-ଛାୟାରେ
ବସନ୍ତେ, ଅପର ଏକ ଶବର ଯୁବକ ,
ବୈଦୂର୍ଯ୍ୟ - ଦ୍ରବାନୁକାରୀ ଅଦୂରସରରୁ ,
( ଇନ୍ଦୁ ନିସ୍ୟନ୍ଦିତ ? ଅବା ଶରଦଭ୍ର ଦ୍ରବ ? )
ହିମଶୀତ, ଅରବିନ୍ଦ ପରାଗେ ସୁବାସ .

କମଳିନୀ – ଦଳ—ପୁଟେ ସଲିଳ ଆହରି
ଧୌତପଙ୍କ ସୁନିର୍ମ୍ମଳ ମୃଣାଳ , ପୁଷ୍କର,
ଭେଟିଲି ବାନ୍ଧବୀପତ—ଶୁଶ୍ରୂଷେରେ ରକ୍ଷଣେ;
( ଅଙ୍କୁର ସହ ଶୁଣ୍ଡେ ଯଥା ଦେବ ! ଶଶିକଳା
ମୃଣାଳ ଦଶିଲୁ ତଥା ଚମ୍ପୂପତ—ମୁଖେ )
ନିବର୍ତ୍ତନ୍ତେ ଖେଦ ପୁଣି ଲଭନ୍ତେ ତୃପତ
ଅଭିମତ ଦିଗନ୍ତରେ ଗମିଲେ ତ୍ୱରିତେ ;
ମୃଗୟୁ-ବାହିନୀ ଯେବେ ହେଲେ ତିରୋହିତ
ବିଳମ୍ବିଲା ତହିଁ ଏକ ଜରତ—ଶବର ;
ହରିଣ—ପିଶିତାଶନ ନପାଇ ଲୁବ୍ଧକ
ନିରାହାରେ ପିଶିତାର୍ଥୀ ଥିଲା ସେହି କାଳେ;
ବିହଗ ସହାର ମାଂସ—ଭୋଜନ-ଲାଲସା-
ଯୋଗୁଁ ଶୁକକୁଳ—ନୀଡ଼ ଭ୍ରୂକୁଟି ବିଭ୍ରମେ
ଗୋଟି ଗୋଟି ଗଣି ସେହି ଶ୍ୟେନ ,ପକ୍ଷୀପରି
ହରି ନେଉଥିଲା ଆମ୍ଭ ଅର୍ଦ୍ଧେକ ଅସ୍ପୃଷ୍ଟ ;
ଜନ୍ମିବାରୁ ଅତୁତୃଷ୍ଣା ମନରେ ତାହାର
ବହୁ-ତାଳ-ତୁଙ୍ଗ ଅଭ୍ରଂକଷ ଶାଖୀ ଶିଖେ
ଉଠିଲା ସହଜେ, ପୁଣି କୋଟର-ଅନ୍ତରୁ
ବନସ୍ପତି ଫଳସମ ଗୋଟି ଗୋଟି କରି,
ଅକରୁଣେ ନାଶିଲା ସେ ଶକୁନ ଶାବକ ;
ସେକାଳେ ଶୁକ-ପୋତକ ଗର୍ଭଛିଦ୍ର ଯୋଗେ,
ପଶୁଥିଲେ ପାଦପର କୁସୁମ ପରାଏ ;

ମରଣ—ଭୟ-ଉଦ୍‌ଭ୍ରାନ୍ତ ତରଳ—ତାରକ
ପ୍ରାଣହର—ଉପପ୍ଳବ—କମ୍ପିତ—ଶରୀର—
ମୋବୃଦ୍ଧ—ଜନକ ଜାଣି ବିପଦ ନିକଟେ
ତ୍ରାସ—ବିଗଳିତ—ସନ୍ଧି ଗ୍ରନ୍ଥି—ପକ୍ଷପୁଟେ
ଘୋଡ଼ାଇ ରଖିଲେ ମୋତେ ପ୍ରତୀକାର ପାଇଁ ;
କିନ୍ତୁ ଦେବ ଶୀର୍ଣ୍ଣଶିରା-ଶ୍ରେଣି- ଶ୍ଲେଷୋପମ
କରତଳ କୋଟରାନ୍ତେ ପ୍ରବେଶ କରାଇ
ଅନ୍ତକ—ଦଣ୍ଡାନୁକାରୀ ମୃଗୟୁ ଦୋର୍ଦ୍ଦଣ୍ଡ
ମୁହୁର୍ମୁହୁ—ଦତ୍ତରଜ୍ଜୁ ପ୍ରହାର—କରୁଣ—
କୂଜିତ ସହାୟ ହୀନ ମୋର ବୃଦ୍ଧ ତାତେ
ନାଶିଲା ଘାତୁକ ଦେବ! ଅନ୍ତକ ପରାୟେ ;
ପକ୍ଷ ଅନ୍ତରାଳେ ମୋର ଆକୁଞ୍ଚିତ ଦେହ
ଭେଟିଲା ନାହିଁ ସେକାଳେ ଶବର ନୃଶଂସ;
ପଡ଼ିଲି ପାଦପ ମୂଳେ ପିତାଙ୍କ ସହିତେ
ଯେକାଳେ ଉପରୁ ଫିଙ୍ଗି ଦେଲା ମୃତମତ;
ବାୟୁ—ପୁଞ୍ଜୀଭୂତ—ପର୍ଣ୍ଣ ଉପରେ ପତନେ
ନଘଟିଲା ଅଙ୍ଗରେ ମୋ ବିଶେଷ ବିକ୍ଳବ;
ନ ଓହ୍ଲାଇଁ ବୃକ୍ଷାଗ୍ରରୁ ସେ ପାପପାମର
କୃତାନ୍ତ ମୁଖ—କୁହରୁ ବିନିଃସୃତପରି ,
ଲୁଣ୍ଠିତଶରୀରେ , ପିତା ଉତ୍ସଙ୍ଗ ସମାନ
ବନକରି ମଦଜଳ ସଂସିକ୍ତ ପତ୍ର-
ମସୃଣ , ଗହନ ପୁଞ୍ଜି ଦିବସାନ୍ଧକାରୀ

ମହତ ତମାଲ ତଳେ ପ୍ରବେଶିଲି ଭୟେ;
ଶୁଖିଲା ମୋ ହୃଦ-ସର, ଜନ୍ମିଲା ବେପଥୁ
ପିପାସାକୁଳିତ—ଚିତ୍ତେ ଦେଖିଲି ଅଦୂରୁ
ଷିତଜଳ-ନପତିତ-ଗତାମ୍ବୁ ପୋତକେ
ପର୍ଣ୍ଣପୁଟେ ଲତା-ପ୍ରାଣେ ସଂଯତେ ସମୂଳ
ଅନ୍ତକ ଅନୁସରିଲା ମେନାକା-ମାର୍ଗକୁ ।।
ଶୁଣୁଥିଲି ଯେବେ ଦେବ ! ପବନ ମର୍ମ୍ମର
ମଣୁଥିଲି ସେ ପିତୃନ-ପାଦ—ଶବ୍ଦ ବୋଲି ।
ସଭୟେ ନିଷ୍କ୍ରାନ୍ତ ହୋଇ ସେ ପାଦପ ମୂଳୁଁ,
ଗମିଲି ତୃଷାର୍ତ୍ତେ ମୁହିଁ ସଲିଳ ପାଇଁକି,
ଜୀବନକୁ ତୁଚ୍ଛୀକୃତ କରିବାକୁ କେହି
ନମଣନ୍ତି ନୃପବର ! ଏ ଜଡ଼ ଜଗତେ ,
ଥିକ ମୋ ନିଷ୍ଠୁର—ପ୍ରାଣ ପିତୃ—ଅପଗମେ
ପ୍ରାଣରକ୍ଷା—ଉପଗ୍ରର ସଲିଳ—ପାନରେ
ବଢ଼ିଲା ମୋ ନିର୍ଘୃଣିତ ଆଶା—ମରୀଚିକା ;
ଜଳଦେବତା—ମଞ୍ଜୀର—ନିକ୍ୱଣ ସମାନ
ମଦକଳ—କଳ ହଂସ—ମଞ୍ଜୁଳକୂଜନ
ଶୁଭିଲା ମୋ କର୍ଣ୍ଣପଥେ ଦୂରେ, ନରବର !
ସେକାଳେ ନଳିନ—ଷଣ୍ଡ-ପରିମଳ ଘେନ
ଦିଗନ୍ତରେ ବ୍ୟାପୁଥିଲା ସୁମନ୍ଦ ସମୀର;
ଜଟାଳ—ଅନଳ ପ୍ରାୟେ ବିଭାବସୁ—କର
ପରିତପ୍ତ କରୁଥିଲା ପାଂଶୁ ପଟଳକୁ;

ସତେ କି ମଧ୍ୟମାରୂଢ଼ ଦେବ ତ୍ୱିଷାଂପତି
ପିଙ୍ଗୁଥିଲେ ବହ୍ନିରେଣୁ ଶ୍ରୀକରସହସ୍ରେ
ନଚଳିଲା ଗୋଡ଼ ମୋର ବଢ଼ିଲା ପିପାସା
ଚତୁର୍ଦ୍ଦିଗ ଦେଖିଲି ମୁଁ ଅନ୍ଧକାର ମୟ ;
ସେକାଳେ ଅଦୂରବର୍ତ୍ତୀ ଜାବାଲି ଆଶ୍ରମୁଁ
ସର୍ବ ବିଦ୍ୟା ବିଶାରଦ ଜାବାଲି ତନୟ
ସମଧର୍ମ୍ମ ସବୟସ ତାପସ-କୁମାରେ—
ପରିବୃତ ହୋଇ ସେହି ତଡ଼ାଗ ତଟକୁ
ଯାଉଥିଲେ ତପୋଧନ ମାଜ୍ଜଣା ପାଇଁକି;
ତେଜଗୁଣେ ଦିଶୁଥିଲେ ଭାସ୍କର ପରାୟେ;
ଅଥବା ଖାଣ୍ଡବ—ବନ—ଦିଧକ୍ଷୁ-ପାବକ
କୈତବ-ବଟୁ-ବିଗ୍ରହ ଅଭିସିଲା ମନେ ;
ପଦ୍ମରାଗ ବିଜଡ଼ିତ କଳଧୌତ ପରି
ତପଃପୂତ ରକ୍ତଦେହ ଗୈରିକ ବଲ୍କଲେ ;
ହିରଣ୍ମୟ ବାଳ ଭାନୁ ଉଷା ମୁଖେ ଯଥା
ଅପୀଶଙ୍ଗ ପ୍ରଭା ଯୋଗେ ଦିଶଇ ସୁନ୍ଦର ;
ଭସ୍ମ—ତ୍ରିପୁଣ୍ଡ୍ର ଅଙ୍କିତ ଲଲାଟ—ଫଳକ
ଚିହ୍ନାଉଛି ସତେ ବିଶ୍ୱ-ବିଷୟ—ଭୋଗକୁ
ନିଷେଧେ ନିବାରନ୍ତି ତାପସ ତନୟ ?
ଗଗନ—ଗମନୋନ୍ମୁଖ — ବଳାକାନୁକାରୀ
ସ୍ୱର୍ଗମାର୍ଗ ଦର୍ଶାଇଲା ପରାୟେ ଉନ୍ନତ୍ରୀବ
ବିମଳ—ସ୍ଫଟିକମଣି—ଦର୍ପଣ —ଦେହ

କମଣ୍ଡଳୁ-ଅଧ୍ୟାସିତ ବାମ କରତଳ;
ତପସ୍ତୃଷ୍ଣା—ପୀତ—ମଖ—ଧୂମ କଣ୍ଠଗଳୁ
ଗାଢରେଦ୍ଧ ଶ୍ୟାମ ପାଣ୍ଡୁସ୍କନ୍ଧ—ବିଲମ୍ବିତ
କୃଷ୍ଣାଜିନ ଛଳେ ଶୁଚି ରୁଚି କି ପ୍ରକାଶେ ?
ଦେବାର୍ଚନାର୍ଥ୍ୟ ଗୃହୀତ ବନାଳି-କୁସୁମ
ଆଷାଢ଼—ଦଣ୍ଡ—ବିଲଗ୍ନ ପୂର୍ଣ୍ଣ— ପର୍ଣ୍ଣପୁଟେ
ଦକ୍ଷ କରେ ତାପସର ଧର୍ମ—ଚିହ୍ନ ରୂପେ;
କୁସୁମ—ଲତାଙ୍କ ଲୁପ ଅଙ୍କୋଳ-ଲୋଚନ
ନୀବାର-ମୁଷ୍ଟି-ବର୍ଦ୍ଧିତ, ବିଷାଣ ଶିଖରେ-
ଉତ୍ଖାତ-ଗୃହୀତ-ପଙ୍କ-ଅଙ୍ଗ—ପ୍ରଲେପନ-
ଅନୁଗତ—କୃଷ୍ଣସାର ତାପସ ସହିତେ ;
ଅକାରଣ ମିତ୍ର ଯେଣୁ ସଜ୍ଜନ ହୃଦୟ
ଜନ୍ମିଲା ହୃଦୟେ ତାଙ୍କ ଅତ୍ୟନ୍ତ କରୁଣା
ଦେଖିଲେ ଯେକାଳେ ମୋତେ ଅର୍ଦ୍ଧ—ମୃତପରି;
କହିଲେ ନିକଟବର୍ତ୍ତୀ ତାପସ ଦାରକେ:—
" ଏହି ଦେଖ ଅସଞ୍ଜାତ—ପକ୍ଷ ଶୁକ ଶିଶୁ
ଶ୍ୟେନମୁଖ ପରିଭ୍ରଷ୍ଟ ଅଥବା ନୀଡ଼ରୁ
ଉଚ୍ଚ—ପତନ—ପୀଡ଼ିତ ମୀଳିତ—ଲୋଚନ
ମୁହୁର୍ମୁହୁ ନିଶ୍ୱସଇ ପୁଣି ମୁହୁର୍ମୁହୁ
ବିସ୍ତାରିତ କରୁଅଛି ଅଗ୍ର—ଚଞ୍ଚୁ—ପୁଟ ;
ଶିରୋଧର ଉତ୍ତୋଳନେ ଅଶକ୍ତ ଏ ଶିଶୁ "
ଶ୍ରୀମୁଖୁଁ ଏସନ ବାଣୀ ଶୁଣି ତପସ୍ୱୀଏ

ନେଇଗଲେ ମୋତେ ସେହି ସରସୀ—ତୀରକୁ
ଅଙ୍ଗୁଳି ଅଗ୍ରରେ ଜଳବିନ୍ଦୁ ମୋ ଓଷ୍ଠରେ
ଦେଇ ପର୍ଣ୍ଣାଶନ—ବୃତ୍ତୀ ରଖିଲେ ଜୀବନ;
ସ୍ନାନାନ୍ତେ ବଳ୍କଳାବରଣ ଶ୍ୱାରସ—ସଂସ୍କୃତେ
ଭଗବାନ ଜଗଚ୍ଚକ୍ଷୁ ସବିତା ଉଦ୍ଦେଶି
ଅର୍ଘ୍ୟ ଦେଇ ବ୍ରହ୍ମର୍ଷି ଜାବାଲି—ତନୟ
ପଦ୍ମ—ପରାଗ—ସୁରଭି—ଶୁଭ୍ର ପମ୍ପା—ବାରି
କମଣ୍ଡଳୁ ପୂରି ସେହି ତଡ଼ାଗ ତଟରୁ
ଫେରିଲେ ଆଶ୍ରମେ ଦେବ ! ମତେ ସଙ୍ଗେ କରି;
କିଛିଦୂର ଯାଇ ମୁହିଁ ଦେଖିଲି ଆଶ୍ରମ
ତାଳ-ତିଳକ-ତମାଳ-ହିନ୍ତାଳ-ବକୁଳ,
ଏଳା ଲତା—ବିଜଡ଼ିତ ନାରିକେଳ ବନ
ସୁରଭିତ ଲୋଧ୍ର ରଙ୍ଗେ; ଉଲ୍ଲସନ୍ତ ଯହିଁ
ଅଳିକୁଳେ ଝଙ୍କାରିତ ସହକାର ତରୁ,
ଉନ୍ମଦ-କୋକିଳ-କୁଳ କଳାଳାପେ, ପୁଣି
ବିରଚିତ ବନଦେବୀ ଲତା ଦୋଳାସନ
ଯହିଁ କ୍ରି, ବାତ—ଚଳିତ ଉନ୍ନତ ପାଦପେ
ଅଧର୍ମ୍ମ-ନାଶ-ପିଶୁନ * ନକ୍ଷତ୍ର—ପତନ
ପର୍ଯ୍ୟନ୍ତେ, ଅତି ଧବଳ ବୃନ୍ତ-ବିଗଳିତ—
ପୁଷ୍ପାଞ୍ଜଳି ଅର୍ପୁଛନ୍ତି ବନଦେବୀ ପଦେ ;
ମାରିଚ ମାୟା-କୁରଙ୍ଗ-ଅଲୂନ-ପ୍ରରୂଢ଼

* ପିଶୁନ—ସୂଚକ

ବନବଲ୍ଲୀ, ଦାଶରଥି ଶରକୋଟି କ୍ଷତ
ଚିହ୍ନିତ କନ୍ଦର ଗର୍ଭ ବସନ୍ତେ ଆଶ୍ରମେ ;
ଜଳ କଳଶ ପୂରଣ ଧ୍ୱନି ଶୁଣି ଯହିଁ
ଉତ୍କଣ୍ଠିତ ସଚକିତ ଶିଖଣ୍ଡୀ ମଣ୍ଡଳ ,
ଅବିରତ ଆହ୍ୟାହୁତ-ପ୍ରୀତ-ଚିତ୍ରଭାନୁ
ଅମର ଲୋକ ନମାନ୍ତ-ତପସ୍ୱୀ ସକାଶେ
ଉଦ୍ଭୂତ ଧୂମ ପଟଳ ଛଳେ କି ରଚନ୍ତି
ନୀଳମଣିମୟ ସ୍ୱର୍ଗ-ସୋପାନ—ଶ୍ରେଣୀକୁ?
ତରଙ୍ଗ ଶ୍ରେଣୀ ସଂକ୍ରାନ୍ତ ରବି ବିମ୍ବ ଛଳେ
ଗଗନୁ ଓହ୍ଲାଇ ଅବା ସପ୍ତର୍ଷି ମଣ୍ଡଳ
ତପୋଧନ-ବିଦୃକ୍ଷାରେ ମନକୁ ବଳାଇ
ଅସିଛନ୍ତି କି ଧୀର୍ଘିକା—ବାରି ଅବଗାହି ?
ଉଟଜ ବଟଙ୍କେ ଦୋଳି ପଞ୍ଜରୀ ସାରିକା
ଘୋଷୁଥିଲେ ସୁବ୍ରହ୍ମଣ୍ୟ ବୈଦିକ ସ୍ତୁତିକୁ ;
ଅନଳ ଅବନମିତ ବନାଲି ବ୍ରତତୀ
ପ୍ରଣମିଲା ପରି ପୁଣି ଉଟଜ ଅଜିରେ
ସଂଗୃହିତ, ଆମଳକୀ , କର୍କନ୍ଧୁ , କଦଳୀ,
ଲବଳୀ, ଲବଙ୍ଗ, ଚୂତ, ପନସ, ଇଙ୍ଗୁଦୀ;
ସୋଦର-ପ୍ରତିମ ମଣି କୁରଙ୍ଗ ଶାବକେ
ଅଲୀଢ଼ ହୁଅନ୍ତି ସ୍ନେହେ ତାପସ ଦାରକ ;
ପରିଚିତ ଭସ୍ମଶୂନ୍ୟେ ଅରଣ୍ୟ କୁକ୍କୁଟେ
ବୈଶ୍ୱଦେବ—ବଳି—ପିଣ୍ଡ କରନ୍ତି ଭୋଜନ;

ବର୍ଦ୍ଧନ୍ତ ପ୍ରଶାନ୍ତ ହୋମ ହୁତାଶନ ଯହିଁ
ପକ୍ଷପୁଟେ ସମୀରଣେ କଳାପିକଳାପ;
ନୀବାର ଭୁଞ୍ଜନ୍ତ ପୁଣି କଳହଂସ କୁଳ ;
କରଭ ଅର୍ଦ୍ଧୋପଭୁକ୍ତ ବକ୍ଷିପ୍ତ କୁଟିଲ
ବଷଲତା ସରସ୍ୱତୀ ଭୂଜ ବଗଳତ—
ଶଙ୍ଖବଳୟ ପଦ୍ମତ୍ରେ ଉଠଇ ଅଙ୍ଗଣେ;
ଅରୁଣ—ଚନ୍ଦନ—ଲିପ୍ତ କରବୀର ପୁଷ୍ପ
ତପିଜନ ଅର୍ପିତୁଛନ୍ତ ସବତା ଉଦ୍ଦେଶି;
ହବିର୍ଧୂମ ହିନ୍ତୁ ନାହିଁ ଅନ ମଳନତା;
ଦେଖିଲ ଅଶ୍ରମପୀଠେ ଜାବାଲ ମୁନୀନ୍ଦ୍ର
ରକ୍ତାଶୋକ—ତରୁବର—ଘନଛାୟା—ତଳେ
ବୁଲାଚଲ ମଧ୍ୟେ ଯେହ୍ନେ କନକ—ଶିଖରୀ,
କଲ୍ପାନ୍ତ ଦିବସେ ଯଥା ସହସ୍ର କିରଣ
ଭସ୍ମ ବିଚ୍ଛୁରିତ ଦେହ, ହିମାନୀ ଅବୃତ
ଗୌରୀଗୁରୁ ଧବଳତ, ସର୍ବେ ଉପବୀତ
ତ୍ରିଲୋକ ପାବନୀ ଯଥା ମନ୍ଦାକିନୀ ଧାର,
ସ୍ୱର୍ଗ ଅନ୍ୱେଷଣ ପାଇଁ ପୁଣ୍ୟ ରଜ୍ଜୁଛଳେ
ବହନ୍ତ ମସ୍ତକେ ମୂଳ ଲମ୍ବ ଜଟାଭାର;
ଭସିତ ତ୍ରିପୁଣ୍ଡ୍ରରେଖା କୁଞ୍ଚିତ—କପୋଳେ
ଶ୍ରୀକରେ ସ୍ଫଟିକ—ମଣି—ଅକ୍ଷମାଳା ଭ୍ରମି
ସପ୍ତର୍ଷି ଅଟନ ଭ୍ରମ ଜନ୍ମାଏ ମନରେ;
ଅନଶନ ବ୍ରତଯୋଗୁଁ ଶିଥିଳ ଶରୀର

ବ୍ରତତୀ ବେଷ୍ଟିତ କଳ୍ପ ପାଦପ ସମାନ;
ବିମଳ ସରସୀଜଳ—କ୍ଷାଳନ—ବିଶୁଦ୍ଧ—
ବଲ୍କଳ ଦୁକୂଳେ ଦ୍ୱୟ ତନୁ ସଂଚ୍ଛାଦିତ ;
ସ୍ୱୟମ୍ଭୁ ସମାନ, ପୁଣି ପୀଠ ନାୟକଙ୍କ
ଦେଖି ସେହ୍ୱ ତପୋଧନ —ତପସ୍ୟା—ପ୍ରଭାବ
କର୍ଷିତ ହୋଇଲା ମୋର ଶିଶୁ କଳେବର;
ସ୍ଫୁରୁଥିଲା ବହ୍ନିତେଜ ନୟନେ ତାଙ୍କର
ଉତ୍ତପ୍ତ—କନକ—ଗୌର ସୌଦାମିନୀ-ନିଭ;
କରତଳ-ଆମଳକ—ଫଳକୁ ପରାୟେ
ଦେଖନ୍ତି ନିଖିଳ ବିଶ୍ୱ-ଭୁବନ-ବିଦିତ-
-ପୁରାଣ-ତାପସ ନିଜ ଦିବ୍ୟ ଚକ୍ଷୁ ଯୋଗେ;
ଦେଖନ୍ତେ ପବନ ହେଲା ଚର୍ମ୍ମ ଚକ୍ଷୁଦ୍ୱୟ;
ଥାଉ ଅନ୍ୟ କଥା ଯାଙ୍କ ନାମ ଉଚ୍ଚାରଣେ
ଅଶେଷ ଦୁସ୍ତର ପାପ ହୁଏ ଅପଗତ ,
ଧନ୍ୟ ସେହ୍ୱ ପୀଠ ପୁଣି ଧନ୍ୟା ସରସ୍ୱତୀ
କରୁଣା ଜଳ ନିଷ୍ୟନ୍ଦ ଅଗାଧ ଗାମ୍ଭୀର୍ଯ୍ୟ
ଶ୍ରୀମୁଖ କମଳ ସୁଖ ଯେଣୁ ଅନୁଭବ
ନିବସନ୍ତି ଦେବୀ ; ହଂସୀ ଯେସନ ମାନସେ;
ନୃମଣି ! ଚିନ୍ତିଲ ପୁଣି ଧନ୍ୟ ସେହ୍ୱ ଜଗ
ପ୍ରଳୟ ଭାସ୍କର କର ପରା ଦୁର୍ନିରୀକ୍ଷ
ମୁନି ଶିଖା ଅଗ୍ନିଲୟା ନହୋଇ କାତର,
ଯଥା ଦେବ ! କ୍ଷୀରାମ୍ବୁଦ ବିଭାବସୁ ଶିଖେ ;

ଅଥବା କ୍ଷୀର-ପିଣ୍ଡ -ଧବଳା – ଜାହ୍ନବୀ
ଯଜ୍ଞପବିତ ଶିରେ ଯଥା, ଜଗତ ବିଧ୍ୱଂସି
ଭାଲ– ବହ୍ନି ଥାଉଁ ସୁଧା ମଣ୍ଡିଲ ମୌଳିକୁ ।
ହେତାଗ୍ନି ଧୂମ-ପଟଳ-ଆଚ୍ଛାଦିତ ବନ
ପ୍ରତିରୋଧ କରୁଅଛୁ ମାର୍ତ୍ତଣ୍ଡ କିରଣ,
ଭଗବତଃ ମୁନିବରେ ଖ୍ୟାତ ହୋଇ ଯେହ୍ନେ
ସଂଯତ କରନ୍ତୁ ପାଦ, ଦ୍ୟୁମଣି, ଆକାଶେ;
ପ୍ରଭଞ୍ଜନ-ଲୋଲ-ଶିଖା -ଜଟିଲ-ସପ୍ତାର୍ଚ୍ଚି
ମୁନି ପ୍ରୀତି ପାଇଁ ଯେହ୍ନେ ଅଖିଳ ପ୍ରସାରୁ
ମନ୍ତ୍ର ପୂତ ହବିର୍ଭାଗ କରନ୍ତୁ ଗ୍ରହଣ ;
କମ୍ପାଇ ବଲ୍କଲ ପଟ କମ୍ପାଇ ବ୍ରତତୀ
ପୁଷ୍ପ ପରିମଳ ଘେନି ସୁମନ୍ଦ ସଂଚରି
ଗନ୍ଧବହ ସେବୁ ଅଛୁ ସଶଙ୍କେ ମୁନିଙ୍କ;
କରୁଣା ପ୍ରବାହ ସମ, ସନ୍ତରଣ ସେତୁ
ସଂସାର-ସିନ୍ଧୁର, ପୁଣି ସନ୍ତୋଷ-ସାଗର,
ବିଷୟ-ଭୋଗ-ଲାଲସା-ଗହନ-କୁଠାର ,
ପ୍ରଜ୍ଞା ଚକ୍ରନେମି, ଲୋଭ-ଅର୍ଣ୍ଣବ-ବାଡବ,
ଶାସ୍ତ୍ରରୂପ ରତ୍ନାକର-ନିକଷ ପାଷାଣ,
ବିଷୟ —ବାସନା ରୂପ କିଶଳୟ ପ୍ରତି
ସର୍ବଗ୍ରାସି ଦାବାନଳ ସଦୃଶେ ଭୀଷଣ,
ମୋହ ଅନ୍ଧକାର ପ୍ରତି ସାକ୍ଷାତେ ଭାସ୍କର ,
ନରକ-ଦ୍ୱାର-ଅର୍ଗଳ-ବନ୍ଧନ ସମାନ ,

ସରଳତା ମୂର୍ତ୍ତିମନ୍ତ , ପ୍ରଭବ ପୂଣ୍ୟର
ପବିତ୍ର ମୁନି ପୁଙ୍ଗବ ସେ ଅଶ୍ରମ ପୀଠେ ।
ଭଗବତଃ ପ୍ରଭାବରୁ ମାତ୍ସର୍ଯ୍ୟ ବୈରତା
ତିରୋହିତ ହୋଇଅଛି ସେହି ତପୋବନୁଁ;
ଚିରନ୍ତନ ବୈରଭାବ ତେଜି ଜୀବଶ୍ରେଣୀ
ଅବିରୋଧେ ତପୋବନେ କରନ୍ତି ବସତି;
ବିକଚ ଉତ୍ପଳ—ବନ-ରଚନାନୁକାର
ଉନ୍ମୁକ୍ତ ଚଞ୍ଚୁ ଚନ୍ଦ୍ରକୀ ଶିଖଣ୍ଡ ଘୁଷ୍ଟାରେ
ଉଦ୍ଦାମ—ଦ୍ୟୁମଣି-ଦ୍ୟୁତି-କ୍ଳାନ୍ତ ଅହିବର
ନିଃଶଙ୍କେ କରଇ କ୍ରୀଡ଼ା ତପସ୍ୟା ପ୍ରଭାବୁଁ;
ଅନୁପ୍ରଜାତ କେଶର କେଶରୀ ଶାବକ-
ସଙ୍ଗତେ କୁରଙ୍ଗ ଶିଶୁ ସହଜ ସମ୍ମାନେ
ପିଉଅଛି ମୃଗୀ ସ୍ତନ୍ୟ ଆଦରେ ଆହ୍ଲାଦେ;
ବୁଭୁକ୍ଷିତ ଦନ୍ତୀବର କଲଭ ନିର୍ଭୟେ
କୁମ୍ଭି କୁମ୍ଭ ବିଦାରଣ ହୃଦ୍ରକ୍ଷ-ହର୍ଯ୍ୟକ୍ଷ
ଶିଶିରକର ଧବଳ ମୃଣାଳ ସୋଦର
ଜଟାଭାର ଜଘୃକ୍ଷାରେ ବଳାନ୍ତି ମନକୁ;
ଗଣ୍ଡସ୍ଥଳ ଶୋଭାକର ମଦାମ୍ବୁ- ନିସ୍ତଳ
ମଦଜଳ ପାନାସକ୍ତ ମଧୁପ ପଟଳେ
ନିବାରନ୍ତି ନାହିଁ ତହିଁ କର୍ଣ୍ଣ ତାଳେ କରୀ
ଦସ୍ତୀ ପ୍ରରୋଚକ ଜେଣୁ ଜାବାଲି ଅଶ୍ରମ ;
ରକ୍ତାଶୋକ - ତରୁଚ୍ଛାୟେ ତାପସ କୁମାର

ରଖି ମତେ , ବନ୍ଦିଲେ ସେ ପିତାଙ୍କ ଚରଣେ
ବସିଲେ ଅଦୂରେ ଯାଇ କୁଶାସନ ପରେ
ଜିଜ୍ଞାସିଲେ ମୁନି ସ୍ନେହ ତନୟ ହାରୀତେ ;
ଯାବତ ବାରତା ମୋର ଶୁଣି ତପୋଧନ
ପ୍ରଭୃତିଙ୍କ ସମ ଦେବ ! ଦେଖିଲେ ସସ୍ନେହେ ;
ସକରୁଣ ଦୃଷ୍ଟି ତାଙ୍କ ପ୍ରସରି ମୋ ଦେହେ
ପ୍ରକ୍ଷାଳିଲା ଅଙ୍ଗ ମୋର ପୁଣ୍ୟ ଜଳେ , ସତେ ?
କାଳ ସ୍ୟଦର୍ଶୀ ମୁନି ତପସ୍ୟା ପ୍ରଭାବୁଁ
କରତଳ ଗତ ପରି ଦେଖନ୍ତି ଜଗତ ,
ଜାଣନ୍ତି ତାପସ ବୃନ୍ଦ ତାହାଙ୍କ ପ୍ରଭାବ
ଜିଜ୍ଞାସିଲେ ତେଣୁ " ଦେବ କେଉଁ ଅବିନୟେ
କେଉଁ ଜନ୍ମାନ୍ତର ଦୋଷେ ଜନ୍ମିଲା ଏ ଶୁକ
ତିରଶ୍ଚୀନ କୁଳେ , କିବା ଥିଲା ତାର ନାମ ?
ନିବାରନ୍ତୁ କୁତୂହଳ , ନିବର୍ତ୍ତୁ ସଂଶୟ ;
କହିଲେ ତାପସ " ପ୍ରାୟ ଦିବସାବସାନ ,
ଦୈନନ୍ଦିନ ବ୍ୟାପାରକୁ ଅଟଳ ସମସ୍ତେ
କହିବି ସମସ୍ତ ତାର ଜନ୍ମାନ୍ତର କଥା
ଚେତିବ ସେ ଶୁକ , ଶୁଣି ସ୍ୱପ୍ନ ଜ୍ଞାନ ପରି ।
ଏ କାଳରେ ଦେବଚକ୍ଷୁ ଦିବସ ବାନ୍ଧବ
ପଲ୍ଲିଳ-ଭରିତ-ଅନ୍ୟ ତାର୍କ୍ଷ୍ୟ ଅଣ୍ଡପରି
ଶୋଭୁଥିଲେ ଅସ୍ତାଚଳ ପ୍ରତୀଚୀ ଲଲାଟେ ,
( ତାପସ ରକ୍ତଚନ୍ଦନ ଅର୍ଘ୍ୟ ଲିପ୍ତ କିସେ ? )

ଅଥବା ଅପରାର୍ଣ୍ଣବ-ଶଫ୍ରିତ ମୁରାର-
ନାଭି-ନଳିନ-ଗଳିତ ରକ୍ତ ମଧୁଧାରା-
ପରାଂଶୁ ଅମ୍ବରତଳ-ଲମ୍ବିତ ମରୀଚ ;
ଅବଦାତ ପାରାବତ ଚରଣ ପାଟଳି-
ରାଂଗେ ରଞ୍ଜିଲଣି ଜୋ ପ୍ରାଚେତମୀ ପଠ ,
ଦିବସାବସାନ ଦେଖି ସୌର କରଜାଳ
ପତତ୍ରୀ ପରାଏ ତ୍ୟଜି କମଳିନୀ ବନ
ଆଶ୍ରିଲେଣି ତରୁଶିରେ ପର୍ବତ ଶିଖରେ ;
ଅସ୍ତ ଉପଗତେ ଦେବ ! ସହସ୍ରଦୀଧିତି
ଉଲ୍ଲସିଲା ସନ୍ଧ୍ୟାରାଗ, ବନ୍ଧୁର ଗଗନ
ବିଦ୍ରୁମ-ଲତା-ପଟଳ ଧାରିଣି ଅର୍ଣ୍ଣବ ।
ପ୍ରୋଷିତ ଭର୍ତ୍ତୃକା ପରି ସତୀ ସରୋଜିନୀ
କମଳ କୁଟ୍ମଳ ରୂପ କମଣ୍ଡଳୁ ଧରି
ଧବଳ ମୃଣାଳ ସୂତ୍ର ଯଜ୍ଞୋପବୀତିନୀ
ବିଶଦ ସାରସ କୁଳ ପଟ ପରିଧାନା
ଅଚିରେ ତାପସୀବ୍ରତ ତପସ୍ୱିନୀ ବେଶେ ।
ପଡନ୍ତେ ପତଙ୍ଗ ପାଦ ସାଗର ଅମ୍ଭସି *
ଛିଟା ଛଟେ ତାରାଗଣ ଉଦିଲେ ଅମ୍ବରେ ,
ଅଥବା ସିଦ୍ଧ ସୁନ୍ଦରୀ-କ୍ଷିପ୍ତ ସନ୍ଧ୍ୟାର୍ଚ୍ଚନ
କୁସୁମ ଅଞ୍ଜଳି ( ପୂଜିବାକୁ କାଳକର—
ପ୍ରଭାକର ପଦେ ) ଛଟେ ତାରକା ଗଗନେ ;
ନିବର୍ତ୍ତିଲା ସନ୍ଧ୍ୟାରାଗ ; କିଅବା ତାପସେ

ତରଣି ପାଦ ପ୍ରକ୍ଷାଳି ଜଳାଞ୍ଜଳି ଯୋଗେ
ପୋଛୁଲେ ପ୍ରତୀଚୀପଟୁ କୁଙ୍କୁମ ଲୋହିତ ?
କଜ୍ଜଳ ନଭ ତମିର ଦେହେ ବହ୍ନିବେଣୀ
( ବୈରାଗୀଣୀ ବେଶେ କୃଷ୍ଣ ଅଜିନ ପରାୟେ )
ଆବରିଲା , ଦେଖି ସନ୍ଧ୍ୟା-ଚରମ ଦଶାକୁ ,
ବସ୍ତାରିଲା ଅନ୍ଧକାର କାନନେ କନ୍ଦରେ
କିନ୍ତୁ ପ୍ରବେଶିଲା ନାହିଁ ତାପସମାନସେ ;
ତାରକା କପାଳ ଧାରୀ , ପୂର୍ଣ୍ଣେନ୍ଦୁ ଭୂଷିତ -
-ବସ୍ତୃତ ମଣ୍ଡଳୁଁ ଝରେ ମଙ୍ଗଳ ଧବଳ-
ଜ୍ୟୋତ୍ସ୍ନାପୂର ହରଶିରୁ ଯଥା ମନ୍ଦାକିନୀ ;
ବିକସ୍ୱର-ପୁଣ୍ଡରୀକ-ଗୌର-ସୁଧାକର-
ସରସୀ-ଚନ୍ଦ୍ରିକା-ଜଳ-ପିପାସୁ-କୁରଙ୍ଗ
ଅମୃତ-ପଙ୍କ-ବିଲଗ୍ନ-ନିର୍ମଳ ପରାଏ
ବିଭାସିଲା ମେଖଳାରେ ଐନ୍ଦବ କଳଙ୍କ ;
ପଡ଼ିଲା ଚନ୍ଦ୍ରମା କର କୁସୁମ ପାଣ୍ଡୁର
( ସିନ୍ଧୁବାର ଫୁଟିଲା କି ଧରଣୀ ଆଚ୍ଛାଦି , )
ଉଦୟ ରାଗ ରଞ୍ଜିତ ରଜନୀ ନାୟକ
ଗାତ୍ର ପୋଛୁ ଉଠିଁବାରୁ ପ୍ରଚୀ ଚେଲପଟେ ;
ଆକାଶ ଗଙ୍ଗାବିଗାହି କ୍ଷାଳିତ ସିନ୍ଦୁର
ଅଭ୍ରମୁ-ବଲ୍ଲଭ କୁମ୍ଭ ପରାୟେ ସୁନ୍ଦର ;
ଧୀରେ ଧୀରେ ଉଠିଁବାରୁ ଅମୃତ ବାସିତ
ସୁଧା ଲିପ୍ତ ପଗ୍ଦଶେ ଧବଳୀ ସୁନ୍ଦରୀ

ଶିଶିର-ବିନ୍ଦୁ ଦ୍ରବାର୍ଦ୍ର-ସୁମନ-ସଞ୍ଚାର
-ପ୍ରଫୁଲ୍ଲ-କୁମୁଦବନ-କଷାୟ-ସୁରଭି
-ପରିମଳ-ସୁସେବିତ-ନିଦ୍ରା-ଭରାଲସ
-ଅନ୍ୟୋଽନ୍ୟ-ଗ୍ରଥିତ-ଅକ୍ଷି-ଯୁଗ୍ମ-ପକ୍ଷପୁଟ
ରୋମନ୍ଥ-ମନ୍ଥର-ମୁଖ ଆଶ୍ରମ କୁରଙ୍ଗ
ଦର୍ଭାସନେ ସୁଖେ ସୁପ୍ତ ଉଟଜ ଅଙ୍ଗନେ;
ଚନ୍ଦ୍ରାତପ ଉଦ୍ଭାସିତ ଦେବ ! ତପୋବନେ
ବେଦାସନେ ଉପବିଷ୍ଟ ଜାବାଲି ମୁନୀନ୍ଦ୍ର ,
ପବିତ୍ର ଦର୍ଭ ଥବିତ୍ର ଧରି ଛାଲପାଦ
ସେବୁଥିଲେ ମନ୍ଦେ ମନ୍ଦେ ତାତ ତପୋଧନେ ,
ଜଣାଉଁ ସମ୍ମୁଖରେ ଋଷି କୁମାର ପ୍ରତୀକ୍ଷା
ଶୁଣିବାକୁ ମମ ଜନ୍ମାନ୍ତର କଥା ସବୁ
ଏକାଗ୍ର ମାନସ ସେହି କୁମାର ଉଦ୍ଦେଶି
ଆରମ୍ଭିଲେ ଇତିହାସ ଛଳେ , ନୃପମଣି !
ଜନ୍ମାନ୍ତର କଥା ମୋର ପୁଣି ଭବିଷ୍ୟତ ;

——୧୦୦୮——

ଓଁ

ଚିରଞ୍ଜୀବ

ଶ୍ରୀମାନ୍ ବୀରମିତ୍ରୋଦୟ ସିଂହ ଦେବ

ସୋନପୁର — ଅଧୀଶ୍ୱର

ଉଦାର — ହୃଦୟେଷୁ ।

ଅବରଜ !

ଆଶୀର୍ବାଦଛଳେ ଅର୍ପୁଅଛି ଏ ପୁସ୍ତକ,
ଅର୍ଜିବ କପଟ ମୂର୍ତ୍ତି, ଯଶସ୍ୱାନ୍ ଭୂମ୍ନେ;
ଦେବ ଭାବାପନ୍ନ ଏହୁ ବୈଦିକ ପୁରୁଷ
ଏକାବ୍ୟ-ନାଟକ-ଶୁଭ ବାଣୀଯୋଗେ ତବ, —
ଧୀବୃତ୍ତି ପ୍ରେରିତ ହେଉ ସତ୍କର୍ମ୍ମ ନିୟୋଗେ,
ସବିତା-ବରେଣ୍ୟ-ଭର୍ଗ-ମହିତ ପ୍ରସାଦେ ।

ରଚକ ।

——※※——

# ବୈଦିକ ପ୍ରକୃତି ‡

—※:○:※—

ଦୁଗ୍ଧ – ଫେନ – ଗୌର ଯୁବ ଦେବାକୃତ ନର ,
ପ୍ରଲମ୍ବ , କୁଞ୍ଚିତ , ଚାମୀକର ତେଜ ଜିଣି ,
ଦୋଳଇ ପୃଷ୍ଠରେ ରୁକ୍ଷ ଆଲୁଳିତ କେଶ ;
ଅଯତ୍ନ ସୀମନ୍ତ ଯୋଗେ ଦ୍ୱିଫାଳ ଚିକୁର ,
ଧର୍ମ–ଦାଣ୍ଡ ଜବା ସଦ୍ୟ ସତ୍ତ୍ୱ ଅବର୍ତ୍ତିବେ ?
ଆୟତ ଲୋଚନ ବେନି ଆକର୍ଣ୍ଣ ପୂରିତ ,
ଚନ୍ଦନର ଶାର୍ଙ୍ଗଧନୁ ଭ୍ରୂଲତା – ଯୁଗଳ ,
ବେନି ମିଶ୍ରଣରେ , ମଧ୍ୟେ ଈଷତ ଅନତ
ଶାରଙ୍ଗପାଣିର ପାଣି କବଳ ପାଇଁକି ?
ମୁହୁ ମୁହୁ ବର୍ତ୍ତୁଥାଇ ଲୀଳାର ତାଣ୍ଡବ
ଦେଖି ପ୍ରକୃତିର ଦୁଃତ୍ତମଣି ଶୋଭାରାଶି ;
ଅସିଧାରା ସମ ଯାର ନାସିକା – ସୁଷମା ,
ଅଙ୍କୁରିତ ଶ୍ମଶ୍ରୁ ରାଜି ଅନ୍ୟୋନ୍ୟ ଆଶ୍ରୟେ ,
କୁସୁମିତ ଯଉବନ କୋମଳ ପରଶେ —

---

‡ ଆର୍ଯ୍ୟ ମାନଙ୍କର ପ୍ରଥମ ବାସସ୍ଥାନ ସୁମେରୁରେ ଥିବାର ବାଲ ଗଙ୍ଗାଧର ତିଳକ ବୈଦିକ ପ୍ରମାଣ ଦ୍ୱାରା ତାହାଙ୍କର " The Arctic Home inthe Vedas " ରେ ପ୍ରତିପନ୍ନ କରିଅଛନ୍ତି ।

ଲଳିତ , ଆସ୍ୟ - କମଳ ଦେବାକୃତି ଛଟା ,
ପ୍ରଶାନ୍ତ , ମହତ ଭାବ ବିଭୂଷିତ ହେଲେ ,
ଅନ୍ତରାତ୍ମା - ନିଦର୍ଶନ ଯେଣୁ ବକ୍ତ୍ରାମ୍ବୁଜ ।
ଉଗାରେ ରକ୍ତିମା ଛଟା ଅଧରୋଷ୍ଠ ବେନି ,
ନଚେତ କି ସେ ସରସ୍ୱତୀ, ଯୁବା-ବାଲ୍ୟ-କାଳେ
ତାମରସ - ଦଳେ ଦୁଗ୍ଧ ପିଆନ୍ତି ଆଦରେ ,
ବର୍ତ୍ତି - ବଇଭବ ତହିଁ ନିତ୍ୟ ସଂଘର୍ଷଣେ
ଗୌର କରଅନ୍ତି ଏହି ସୁଷମା - ମାଧୁରୀ ?
ଶାଳ ପ୍ରାଂଶୁ ବପୁ, ଭୁଜ ଆଜାନୁ ଲମ୍ବିତ ,
ନାହିଁ ତହିଁ ଜ୍ୟାଘାତର ବ୍ରଣ - ଚିହ୍ନ - ରାଜି, *
ସବ୍ୟେତରେ ଉର୍ଜ୍ଜସ୍ୱଳ ଭାସ୍ୱର କୁଠାର , †
କ୍ଷତ୍ରଧର୍ମ୍ମ ଦେହ ପରିତନେ କି ଭୂଷିଲେ ?
କି ଗୁଣ ଉପମା ତହିଁ, ଭାର୍ଗବ ମୁନୀନ୍ଦ୍ର
ବିଜିଗୀଷା ମୂଳମନ୍ତ୍ର ଯାରଧର୍ମ୍ମ ନୀତି ,
କ୍ରୂର ନାହିଁ ଏ ଯୁବାର ତନୁ କୁ ଅମର୍ଷ ।
ଆତ୍ମରକ୍ଷା , ପରସେବା, ଯାର ନିତ୍ୟ ବ୍ରତ ,
ଶାଶ୍ୱତ ସତ୍ୟର ଯେଉଁ ଚିନ୍ମୟ ପ୍ରସୂନ ,
ସେହି ମାନ କୁସୁମିତ ହୃଦୟ - କେଦାରେ ;
ଉନ୍ନତ ବିଶାଳ ବକ୍ଷ ଉଚ୍ଚତାଭା ଜିଣି ,

* ସେ କାଳରେ ଜ୍ୟାର ସୃଷ୍ଟି ହୋଇ ନଥିଲା ।
† କୁଠାର ମାନ ଆତ୍ମରକ୍ଷା ପାଇଁ ବ୍ୟବହାର କରୁଥିଲେ ।

ଦୃଢ଼ ମାଂସ ପେଶୀ ବକ୍ଷେ ଇଷତ ବନ୍ଧୁର,
ନାହିଁ ଉପବୀତ ✤ ନବଗୁଣ ସ୍କନ୍ଧଦେଶେ ।
କୈଶୋର - ଲାବଣ୍ୟ - ଖଚ - କ୍ଷୁଭିତ ବିଗ୍ରହ,
ଅମରୀ - ବାଞ୍ଛିତ ଏହି ପୁରୁଷ ପୁଙ୍ଗବ ।
ଚର୍ମ ଉତ୍ତରୀୟେ * ଯୁବା, ଗଜାଜିନ ଧାରି
ଶୂଳପାଣି ମହେଶଙ୍କ ସୁଷମା ହରଇ ;
ଶୌର୍ଯ୍ୟ ସମ ସଦା ପାର୍ଶ୍ୱେ ଅନୂଢ଼ା ଯୁବତୀ
ଶୀତାଂଶୁ ତପନ ସଙ୍ଗେ ଛାୟାଦେବୀ ଯଥା ;
ସଙ୍ଗେ ସହଚରୀ ତାଙ୍କ ପଡନ୍ତି ଚରଣେ
ବନମଧ୍ୟେ ନିଜ ଆତ୍ମା ହୃଦୟେ ଯୁବାର ।
ନବୀନ ସ୍ୱରୂପେ ବାହୁ ଯୁବା - ଗଳଦେଶେ
ଲମ୍ବାଇ ସକଳ ନେତ୍ରେ ଊର୍ଦ୍ଧ୍ୱମୁଖେ ବାଳା,
ନୈସର୍ଗିକ - ଲୀଳାକ୍ଷେତ୍ର - ସୁମେରୁ ପ୍ରାନ୍ତରେ

✤ ସେ କାଳେ ଉପବୀତ ଧାରଣ କରୁନଥିଲେ । ଭାରତବର୍ଷକୁ ଆସିବା କାଳେ ଅନାର୍ଯ୍ୟ ମାନଙ୍କ ସହିତ ଯେତେବେଳେ ଯୁଦ୍ଧାରମ୍ଭ ହେଲା ଆପଣାକୁ ପୃଥକ୍ ଭାବେ ପରିଚୟ କରିବାକୁ 'ଯଜ୍ଞୋପବୀତ' ନାମରେ ସ୍କନ୍ଧରେ ଉପବୀତ ଧାରଣ କରିଥିବା କଥା ଇତିହାସରେ ଅନୁସନ୍ଧେୟ ।

* ସେ କାଳେ ଯେ କୌଣସି ପ୍ରକାରେ ଲଜ୍ଜା ନିବାରଣ କରୁଥିଲେ ; କଟିରେ କେବଳ ପରିଧାନ କରିବାକୁ ହେବ ଏପରି ବିଧି ଥିଲାନାହିଁ ।

ନିସର୍ଗ-ଲକ୍ଷ୍ମୀର ଭୁବନମୁଗ୍ଧ ଚିତ୍ରପଟ —
ଲୁଟିବାକୁ ନରେଖଇ ଯୁବା ମୁଖ ପ୍ରତି ।
ନେମ (ଦୋନ ଇ ବେଣୀ କତା ବନ୍ଧ ନମ ,
ଅନୁପମ ଶୋଭା ବହୁ ଅଜନ କଞ୍ଚୁକ , ‡
ପୀନୋନ୍ନତ ବକ୍ଷୋଜକୁ ଅବରେ ନୀରନ୍ଧ୍ରେ ।
କୃତ୍ତିବାସ ଉତ୍ତରୀୟ * ଗାତ୍ର ଆବରଣ ,
ସତ୍ତ୍ୱ ମୂର୍ତ୍ତିମତୀ ହୈମକାନ୍ତିକୁଳେଶ୍ୱରୀ
କି ଅବା ସେ ଶୈବାଳର ଆବରଣ ତଳେ ?
ସ୍ଥିର-ବିଦ୍ୟୁଲ୍ଲତା ଯଦି ନିର୍ବାତ ପ୍ରଦେଶେ
ଧାତୁଶ୍ରେଷ୍ଠେ ବିଭୂଷଇ ଅଙ୍ଗର ଦ୍ୟୁତିଚ୍ଛ , (୧)
ତେବେ ଏବା ସେ ହେବ ସେହି ଦିବ୍ୟଜ୍ୟୋତି ,
ଲାବଣ୍ୟବତୀର ଲୀଳା-ଲଳିତ ଲାବଣ୍ୟେ ।
ମର୍ତ୍ତ୍ୟରେ ଅନଙ୍ଗ ଅବା ଦେହ ପରିଗ୍ରହି ,
ସଞ୍ଚାରିଣୀ ଦୀପ ଶିଖା ପ୍ରାପ୍ତେ ସମୁଜ୍ଜ୍ୱଳେ ,

---

‡ ସେ କାଳେ କାର୍ପାସ ବସ୍ତ୍ରର ସୃଷ୍ଟି ହୋଇ ନଥିଲା ।

* ନାନା ଭଙ୍ଗିରେ ପରିଧାନ ବସ୍ତ୍ର ନଥିଲା । ଲଜ୍ଜା ନିବାରଣ ଓ ଗାତ୍ର ଆବରଣ ପାଇଁ ଯଥାତଥା ରୀତିରେ ପରିଧାନ କରୁଥିଲେ ।

(୧) Plátinum ( ପ୍ଲାଟିନମ୍ ) ନାମକ ଧାତୁ ଅଣୁରେ ନିର୍ବାତ କାଚ ଗୋଲକରେ ସ୍ଥିର ବିଦ୍ୟୁତ୍ ଅତି ଶୁକ୍ଲବର୍ଣ୍ଣ ଆଲୋକ ପ୍ରକାଶ କରେ ( Tantal-um lamp ଲେଖକଙ୍କର ଲକ୍ଷ୍ୟସ୍ଥଳ )

ଯୁବା ସହଚରଣୀ ସେ ଯୁବା ମନୋହରା ।
ବିସ୍ତୃତ ପାଦପଘତ – ସୁନୀଳ – ବକ୍ଷରେ
ଚକ୍ରବାଳ ପରିସୀମା ଦୃଷ୍ଟି ଅପସାର ,
ବିମ୍ବିତ ଚଣ୍ଡାଂଶୁ ସମ ଦୀପି ଅନ୍ତରୀକ୍ଷ ,
ଉଦୀଚୀ – ଅଙ୍କର - ଦ୍ୟୁତି-ଚପଳା–ସୁନ୍ଦରୀ (କ)
ମୁରହର - କଣ୍ଠହାର – କୌସ୍ତୁଭ ସମାନ ,–
ଚଞ୍ଚଳ ହିଲ୍ଲୋଳେ ଯହିଁ ବହଇ ସୁଷମା ;
ହେରି ସେହି ଅକୂପାର ଲୋଳ – ଜଳକେଳି ,
ମୁଗ୍ଧ ନେତ୍ରେ ଉଦ୍ଧ୍ୱ ସଙ୍ଘ ଭ୍ରିବିପତ ପାଶେ ,
ଉର୍ମି ଭଙ୍ଗେ ମିଶି ଯହିଁ ଶବଦ ଭୈରବ
ସ୍ତବଧ କରଇ ହେଲେ ମାନବ ଜୀବନ ;
ପ୍ରଶାନ୍ତ , ମହତ ଭାବ- ଅନନ୍ତ ଶାଶ୍ୱତ ,
ଆହରନ୍ତି ଯେଣୁ ସେହି ଭାବୁକ ମାନସେ ।
ପ୍ରଭାମୟୀ ଉଷାଦେବୀ ପାଟଳ ବରଣା ,
ପୌରନ୍ଦରୀ ଦ୍ୱାରେ ଉଦ୍ଧ୍ୱ ଅର୍ଯ୍ୟମା ଅଗ୍ରତେ ,
ପୃଥିବୀର ଅଧିଷ୍ଠାତ୍ରୀ * ଦେବୀ ଧନବତୀ *
ଲୋକ ଦଶାନ୍ତର ଅଭ୍ୟୁଦୟର ପର୍ଯ୍ୟାୟେ ,
ଦୀର୍ଘ ଧ୍ୱାନ୍ତ ବିନାଶିନୀ ଦ୍ୟୁଲୋକ – ଦୁହିତା ,*

---

(କ) — Aurorà Boriális

* ଋକ୍ ବେଦରେ ଏହି ସମସ୍ତ ବିଶେଷଣ ଦ୍ୱାରା ଉଷାର ସ୍ତୁତ କରା ହୋଇଅଛି ।

ବିବେକ ବିକାଶି ଯଥା ଅଜ୍ଞାନ - ଅନ୍ଧାର —
ଲୁପ୍ତ କରି ପ୍ରକାଶଇ ଜ୍ଞାନ ଘଟା ଛଟା ;
ଜଳ ବୁଦ୍‌ବୁଦର ଦ୍ୟୁତି ଧରି ବୃକ୍ଷାବଳି ,
ସୀମାଶୀତ ଦେଶେ, ପକ୍ୱ ପଲାଣ୍ଡୁ ସମାନେ ,
ମସ୍ତକ ଉପରି ଧ୍ରୁବ (୧) କେନ୍ଦ୍ରୀଭୂତ କରି
କେବେ ସବ୍ୟେ, ସବ୍ୟେତରେ ବନୋଟି ସଘୂର୍ଣେ ,
ବୁଲୁଛନ୍ତି ସପ୍ତର୍ଷିଙ୍କ ଅଯୂନ ଚକ୍ରରେ ।
ଜ୍ୟୋତିଃପୂର ଛୁଟେ ନବ - ଦମ୍ପତି - ମସ୍ତକେ
ଢାଳୁଛନ୍ତି ଆଶୀଃ ଚିତ୍ରଶିଖଣ୍ଡୀ ମଣ୍ଡଳ ।
ହିମକୂଟ ଶୈଳଦେହେ ଉଷା - ଅରୁଣିମା
ସତ୍ୱ ଗୁଣେ ରଞ୍ଜେ - ଧର୍ମ ମିଶ୍ରଣ ପର୍ଯ୍ୟେ
ଦେଖି ଯୁବା ପ୍ରେମଭକ୍ତି ଚିନ୍ମୟ ରୂପସୀ ,
ଅନୁରୂପେ ମିଶାଇବ ଆପଣା ଦେହକୁ ,
ଯୁବକ ସାତ୍ତ୍ୱିକ ଦେହେ ରଞ୍ଜେ ମୂର୍ତ୍ତିମତୀ ।
ଧନପତି - ଦିଶେ ଏଣେ ଉଷା - ସହଚରୀ †

---

(୧) — ଯେଉଁମାନେ କେନ୍ଦ୍ର ନିକଟରେ ବାସ କରନ୍ତି ତାହାଙ୍କର ମସ୍ତକ ଉପରେ ସପ୍ତର୍ଷି ଦେଖା ପଡ଼ନ୍ତି । ମସ୍ତକ ଉପରେ ଚକ୍ରାକାରରେ ବୁଲିଲେ କେବେ ସବ୍ୟ କେବେ ସବ୍ୟେତରେ ହେବା ସ୍ୱାଭାବିକ ।

† ଉଷାଥିବା କାଳେ Aurorà Boriàlis

ସ୍ଥିର ଜ୍ୟୋତି ସୌଦାମିନୀ ଗଗନ ଉଦ୍ଭାସି,
ମଣ୍ଡିବ ପ୍ରବେଣୀ ଅବା ସାର୍ବଭୌମ ଶିରେ ?
ଅଂଶୁମାଳୀ – ସପ୍ତବର୍ଣ୍ଣ – ବଇଭବ ଯେମ (କ) ।
ଏହି ଷ ସେ ଦ୍ୟୁତି ଯାହା ଆଦ୍ୟସୃଷ୍ଟି କାଳେ
ଚିଦ୍‌ଶକ୍ତି ସ୍ୱରୂପେ ସ୍ଫୁରିଥିଲା ମହେଶଙ୍କ । (ଖ)
ମାହେଶ୍ୱରୀ ତେଜ ଏହା, ନାହିଁଟି ସଂଶୟ ;
ନୋହିଲେ କି ମିତ୍ର, ବରୁଣଙ୍କୁ (ଗ) ଏକାଧାରେ
ମର୍ତ୍ତ୍ୟରେ ଦେଖାନ୍ତା ? ଯାହା ଅମର୍ତ୍ତ୍ୟ ଉଦ୍ଦିଷ୍ଟ (ଘ)

---

ଉଦିତ ହୁଏ ।

(କ) ସୂର୍ଯ୍ୟଙ୍କର କିରଣରେ ଯେଉଁ ସବୁ ବର୍ଣ୍ଣଅଛି Aurorá Boriális ରେ ସେହି୨ ବର୍ଣ୍ଣଦେଖାଯାଏ

(ଖ) ମୁଁ ସୃଷ୍ଟି କରିବି ଏହି ଜ୍ଞାନ । ଜ୍ଞାନ-ଜ୍ୟୋତିର୍ମୟ ଶାସ୍ତ୍ରାନ୍ତରେ ଅନୁସନ୍ଧେୟ ।

(ଗ) ଦ୍ୟାବୃସ (ବହୁ ସମୟ ବ୍ୟାପି ଉଷାକୁ ଦିନ ରାତ୍ରିର ସମାହାର ବୋଲି ବୁଝା ହୋଇଅଛି )

(ଘ) ଦେବତା ମାନଙ୍କର ଏକ୍ରଦନରେ ମନୁଷ୍ୟ ମାନଙ୍କର ଏକବର୍ଷ ହୁଏ । ଏଣୁ ଦେବତା ଉଦ୍ଦିଷ୍ଟ । ମର୍ତ୍ତ୍ୟରେ ମିତ୍ର ବରୁଣଙ୍କୁ ଏକାଧାରେ ଦେଖାଇବା ମାହେଶ୍ୱରୀ ଶକ୍ତିଭିନ୍ନ ଅପର ଦ୍ୱାରା ଅସାଧ୍ୟ । ଛଅ-ମାସସୁମେରୁରେ ସୂର୍ଯ୍ୟ ଦେଖା ଦେଉ ନଥିବାରୁ ଦୀର୍ଘ ଉଷାହୁଏ ଓ ସେ ସମୟରେ ଉତ୍ତର ଦିଗରେ

ଦୂର ପ୍ରାନ୍ତେ ବାମେରୁର ବିକ୍ଷିପ୍ତ ପର୍ଯ୍ୟନ୍ତେ
ଉଠନ୍ତି ଶୋଭେ, ଆବୃତ (କ) ଶାଦ୍ୱଳ ପ୍ରଦେଶେ ;
ଗୋଧୂ (ଖ) ପଦ ରେଣୁରାଜି ଯୋଗେ ପବିତ୍ରେ
ଉଠନ୍ତି ପ୍ରାଙ୍ଗଣେ ଦୀପ୍ତ ଚଳିତ ପ୍ରସନ୍ନ
ସୁସମିଦ୍ଧ ଶିଖୋଜ୍ଜ୍ୱଳେ, ବର୍ଷୀୟାନମାନେ
ସୂର୍ଯ୍ୟୋପସ୍ଥ (ଗ) ସନ୍ଧ୍ୟାରେ ରତା ମେଧାବିନୀ ସତୀ;
ଦେଖି ଏହି ଶୃଙ୍ଗହାସ୍ୟ ପ୍ରକୃତି - ଦେବୀର ,
ପୁଚ୍ଛିଲା କୌତୁକେ ସତୀ ଯୁବାନ ବରଙ୍କୁ -
" ଆର୍ଯ୍ୟପୁତ୍ର !
ଏହିକି ସତ୍ୟର ଯେହି ବିରାଟ ମୂରତି ,
ବାଲ୍ୟକାଳେ ଶୁଣିଥିଲେ ବର୍ଷୀୟାନ ମୁଖେ ,
ଭୂମା ଆବିର୍ଭାବ କଥା କର୍ଣ୍ଣ - ରସାୟନ ,
ଶୁଣାଥିଲ ଯାହା, ଦେବ ! କହ କୃପାକର (ଘ) " ।

---

Aurorá Boriàlis ଉଦିତ ହୋଇ ଲୌକିକ କାର୍ଯ୍ୟ ସମ୍ପାଦନ ନିମନ୍ତେ ଆଲୋକ ଦିଏ ।

( କ ) - ଯେଉଁସ୍ଥାନରେ ଲୋକ ସର୍ବଦା ଜନ୍ମୁମାବଦ୍ଧ ।

(ଖ) ଅତିଥି ।

(ଗ) ସନ୍ଧ୍ୟା ସମୟରେ ଆଗତ ଅତିଥି ।

(ଘ) ସେ କାଳେ ପ୍ରକୃତିରେ ଭୂମାର ଶଙ୍କା ମନରେ ସ୍ପର୍ଶ କରିଥିଲା ।

କଣ୍ଟକିତ ହେଲା ବପୁ, କଦମ୍ବ କେଶର
ଜଳଦାଗମେ ଶୀକର - ବାତଯୋଗେ ଯଥା
ଉତ୍ତରିଲା, "(ଦେବି!) ବହୁବର୍ଷେ ଦୂର ଦାକ୍ଷିଣାତ୍ୟେ
ଏହି ଆର୍ଯ୍ୟବଂଶ ଯେବେ ପ୍ରକୃତି - ବିପ୍ଳବେ
ରହିବେ ଅର୍ଜ୍ଜବ (କ)-ଆର୍ଯ୍ୟ-ଅରଣ୍ଣ (ଖ) ସ୍ଥଳଙ୍କ
ତେବେ ଦୂରବଂଶଧର ମଧ୍ୟରେ ଏବାଣୀ
ହେବ ଅଲୋଚିତ, ଯାହା ଏବେ ଅଗୋଚର " ।
ଏତେ କହି ଧୀରେ ନୀରବିଲା ସରସ୍ୱତୀ ।
କଳ୍ପନାଖ୍ୟ ବର ସରସ୍ୱତୀଙ୍କ ପ୍ରସାଦେ
ଲଭିଥିଲା, ଶୈଶବରେ ଏଯୁବା ବରେଣ୍ୟ,
ଏଣୁ ଜ୍ଞାନ - ଚକ୍ଷୁ ଯୋଗେ ଦୂର ଭବିଷ୍ୟତ
ବଂଶଧର ସହ ପଞ୍ଚକ୍ଷିତ ଚିତ୍ରପଟ
ନିରୀକ୍ଷିଲା, ହିମକୂଟ ମାର୍ଜିତ - ରଞ୍ଜିତ —
ପ୍ରଭା ପୁଞ୍ଜିଭୂତ ସାନୁମାନ - ହିମାଳୟ
ଉଦିଚୀ ପ୍ରାଚୀନ ପ୍ରାନ୍ତେ ଭାରତ ଦୁର୍ଗର ।
ଭାରତକୁ ନିଦ୍ରାରୁ ଉଠାଇବା ପାଇଁ
ଧ୍ୱନିକୃତ, ପୁଣ୍ୟଭାର ବହଇ କି ଶିରେ ?
ଭାରତର ତମ (ଗ) ଅବସାନ ପାଇଁ ଅବା
ଉଷସତୀ - ଦତ୍ତ୍ୱଥୂ ମେଳେ ମହାଜ୍ୟୋତିର୍ମୟୀ

(କ) ସରଳତା । (ଖ) ଦୂତକାରାଗାର ।
(ଗ) ଅଜ୍ଞାନ, ଅନ୍ଧକାର ।

ଉଜ୍ଜ୍ୱଳ କିରୀଟ ମଣି ଖଚିତ କୁନ୍ତଳେ
କାବ୍ୟତାସ୍ତ ଖଞ୍ଜି, ଉଷା ପାଟଳ ବରଣୀ
ପୁଷା (କ) ନାସ୍ତଜନା ବଧୂ ସାଥେକି ଅଗ୍ରତେ ?
ସରିଲଣି ମେରୁକକ୍ଷେ ପୃଥ୍ୱୀ ଅୟନ (ଖ)
ହସି, ସୃଷ୍ଟି ଶୂନ୍ୟ-ବର୍ତ୍ମ ଅୟନ - କ୍ଷେତ୍ର ;
ଦେଶାନ୍ତରୁ ସନ୍ଧ୍ୟାଗତ ହୋଇ ତତ୍ପ୍ରେରିତ
ଉଷାରୂପେ ଫୁଟିଲଣି ଯୌବନଶ୍ରୀ ମୁଖେ (ଗ) ;
ସୁନ୍ଦରୀ - ଲଲାମ - ଗଣ୍ଡ - ଲଜ୍ଜା - ପାଟଳିମା
ରାଗେ ରଞ୍ଜିଲଣି ଏବେ ଆସ୍ୟ ହରିତର ;
ବର୍ତ୍ତି ବହ୍ନୁଟିତ ଯେବେ ପ୍ରତୀଚୀ ଗଗନ
ଦେଖି ଦେଖି ଦିନମଣି ଯିବେ ଅସ୍ତାଚଳେ
ହରଷିବେ ତେବେ ଧାତ୍ରୀ ଗୀତ ରହଣି

(କ) ଉଦୟ ହୋଇ ନଥିବା ସୂର୍ଯ୍ୟ ବୈଦିକ କାଳରେ ପୁଷା ନାମରେ ଅଭିହିତ ।

(ଖ) ମେରୁ କକ୍ଷରେ ପୃଥିବୀ ଏକଥର ଭ୍ରମଣ କଲେ ଅହୋରାତ୍ର ହୁଏ ।

(ଗ) ପୃଥିବୀ ଗୋଲାକାର ଓ ଆପଣା ଅକ୍ଷରେ ଭ୍ରମଣ କରି ଦିନରାତ୍ର କରୁଥିବାରୁ ଏକସ୍ଥାନରେ ଦିନହେଲେ ଅନ୍ୟ ସ୍ଥାନରେ ରାତ୍ର ହୁଏ ; ଫଳତଃ ଏକସ୍ଥାନରେ ସନ୍ଧ୍ୟା ହେଲେ ଅନ୍ୟସ୍ଥାନରେ ଉଷା ହୁଏ; ଏହି ଦୁଇ କାଳର ସର୍ବଦା ନୈକଟ୍ୟ ସମ୍ବନ୍ଧ ଅଛି ।

ଲଲାଟିକା ପ୍ରାଚ୍ୟେପୁଣି ବାରୁଣୀ ଲଲାଟେ ( କ );
ଅନ୍ତରୀକ୍ଷ ମୁକ୍ତା ଲଲନ୍ତିକା ହୁନଂସ୍ଥୁ (ଖ)
ତରଳମଣି ସଦୃଶ୍ୟେ ଯହିଁ ଢେଙ୍କିବାତୃକ
ଲୂତାତନ୍ତୁ - ବିତାନ - ବର୍ତ୍ତୁଳ ସମ ଦ୍ୟୁତ
ଧରି ଚୁମ୍ବିଲେଣି ଏବେ ଚରମାଚଳକୁ ।
ସୌରମଣି ଧୂମଧାର ପ୍ରାଚ୍ୟେ କାଦମ୍ବିନୀ
ଚକ୍ରବାଳ ବ୍ୟାପି ଦିବ ମର୍ତ୍ତ୍ୟର ସୀମାକୁ
ସ୍ତୁପତ କର୍ମେ ମଣ୍ଡାଦୃଷ୍ଟ ଯୋଜିବ ଏକନେ (ଗ)
ହିଦିବ ଗୁମ୍ଫାକୃତ ଖିଲାନ ସନ୍ତତେ;
ସୃଜିବ ଏ ରଙ୍ଗମଞ୍ଚ, ଯହିଁ ବିଭାବସୁ

---

( କ ) ଶୁକ୍ର ପାହାନ୍ତିଆ ତାରା ରୂପେ ପୂର୍ବ ଦିଗକୁ ଶୋଭିତକଲେ ବୃହସ୍ପତି ସନ୍ଧ୍ୟା ତାରା ରୂପେ ବାରୁଣୀ ଗଚନରେ ଅନେକ ସମୟରେ ଶୋଭା ସମ୍ପାଦନ କରନ୍ତି ।

( ଖ ) ଏହା ପାଞ୍ଚଗୋଟି ତାରା । ହାର ସଦୃଶ୍ୟ ଆକାଶର ଶୋଭା ସମ୍ପାଦନ କରେ । ତହିଁରେ ଚନ୍ଦ୍ର ଅବସ୍ଥାନ କରିଥିଲେ ପଦକ ପରି ହେବାର ସ୍ୱାଭାବିକ ।

( ଗ ) ଧୂମଧାର ଉତ୍ଥିତ ହେଲେ ପ୍ରାତଃ-କାଳୀନ ଶୈତ୍ୟଯୋଗୁଁ ଅନ୍ତରୀକ୍ଷବ୍ୟାପ୍ତ ନହୋଇ ଦିଗ୍‌ବଳୟରେ ଆଁଶ୍ରୟକରେ ତାହା ଆକାଶ ଓ ପୃଥିବୀର ସନ୍ଧି ରୂପେ ଶୋଭାପାଏ !

ସୂତ୍ରଧାର ରୂପେ ଉଭା ହୋଇ ଦ୍ୱାରଦେଶେ
ଅଭିନୟ ସମ୍ପାଦିବେ ପ୍ରକୃତି ମେଳରେ ;
ଯେଉଁ ମଞ୍ଚେ ନଟୀରୂପେ ସଖୀ ସଙ୍ଗେ ଜନୀ
ଏକ ଦୁଇ କ୍ରମ ଗଣନାରେ ଦଶ ଶତ
କରିଥିଲା ସମ୍ପୂର୍ତ୍ତିକା ସଙ୍କୋଚ ଅତୀତେ ( କ )
ପଦ୍ମପ୍ରାଣା ପଦ୍ମ — କର ସଙ୍କୁଚିତ ଦଳରେ
ଗଣିବାରେ ପ୍ରସାରିତ କରନ୍ତି ପୁଣି
ଏକ ପରେ ଏକ ତାର ସହସ୍ର ଦଳକୁ
ଦେଖି ପ୍ରାଚୀ – ମୂଳେ ବିଶ୍ୱ–ମୁକୁଟ–ମଣ୍ଡନ —
ରତ୍ନାଙ୍କୁର ସହସ୍ର ବିସ୍ତୃତ ଦିବ୍ୟ ରୁଚି ( ଖ ) ;
ଛାୟାଦେବୀ ବରବୃତ ( ଗ ) ବନ୍ଧୁ ବନ୍ଦନୀୟ —
ହେଇ ସେହି ସୌମ୍ୟ ମୂର୍ତ୍ତି ଦେବ ବିକର୍ତ୍ତନ
ନୀରାଜନା ରୂପେ ଦେଖ ସୂର୍ଯ୍ୟକାନ୍ତ ମଣି

( କ ) ଗତକାଲି
( ଖ ) ସହସ୍ର ଦଳ ପଦ୍ମର ପାଖୁଡ଼ା ଯଦି ସହସ୍ର କିରଣ ଗଣିବା ଛଳରେ ଗୋଟିଏ ୨ ପ୍ରକାଶିତ ହୁଏ ତେବେ ସୂର୍ଯ୍ୟ ସମ୍ପୂର୍ଣ୍ଣ ଉଦୟ ହେଲେ ତାହାର ସମସ୍ତ ଗଣା ଶେଷ ହେବା କାଳେ ପଦ୍ମ ସମ୍ପୂର୍ଣ୍ଣ ପ୍ରକାଶିତ ହୋଇ ପଡ଼ିବାର ସ୍ୱାଭାବିକ ଅଟେ ।
( ଗ ) ଉଷାକାଳୀନ ଉଦିତ ପ୍ରଥମ ସୂର୍ଯ୍ୟ ବିମ୍ବ ଦର୍ଶନକାଳେ ସେହି ତେଜରେ ଛାୟା ପଡ଼େନାହିଁ ; ଓ ସୂର୍ଯ୍ୟଙ୍କର ପତ୍ନୀ ଛାୟା ଏହା ପୁରାଣ ସିଦ୍ଧଅଟେ ।

ଭୂମି ପୃଷ୍ଠେ ଜଳଲେଣି ଉଗାରଜ୍ୱଳନ (କ)
ପ୍ରାଚୀ ପୃଷ୍ଠି, ଦିଶିଲେଣି ଦେବ ବିରୋଚନ
ସୁରେନ୍ଦ୍ର-ସିନ୍ଧୁର (ଖ) ଶିର-ସିନ୍ଦୂର-ଅରୁଣ
ଯତେ ଅବା ବିଶ୍ୱକର୍ମା-ଶାଣ ଲୀଢ଼ ବପୁ (ଗ)
ବିକର୍ତ୍ତନ ନାମ ଖ୍ୟାତି ଯା ଯୋଗୁଁ ଜଗତେ ।
ବହୁଥିଲା ଏକାଳରେ ମଳୟ ପବନ,
ହସୁଥିଲେ ପୁଷ୍ପ ରାଜି ବିଟପି ବୃନ୍ତରେ,
ବୃକ୍ଷ ଶାଖାଗ୍ରରୁ ଗଙ୍ଗଶିଉଳି ସୁମନ,
ଥପ ଥପ ପଡୁଥିଲା ତୁଷାର ସହିତେ !
ସ୍ତବକ ସ୍ତନରେ ନତ ବଲ୍ଲରୀ ନିଚୟ
ତରୁ ଦେହେ ବଲ୍ଲଭର ଅଙ୍କାଶ୍ରିତା ଯହିଁ ·
ନିଶାର ତୁଷାର ଶୋଭି ନବ କିଶଳୟ-
ମୌକ୍ତିକ-ଗୁମ୍ଫିତ-ଚାରୁ କର୍ଣ୍ଣିକାର ଯେନ,
ଭକ୍ତିଭରେ ନତ ଆଜ ବିବସ୍ୱାନ ପଦେ ।

---

(କ) ସୂର୍ଯ୍ୟ ଉଦୟ ହେଲେ ସୂର୍ଯ୍ୟକାନ୍ତ ମଣି ଜଳିବାର କଥ ସିଦ୍ଧ ଅଟେ ।

(ଖ) ହସ୍ତୀ ।

(ଗ) ବିଶ୍ୱକର୍ମା-କନ୍ୟା ସଂଜ୍ଞା ସୂର୍ଯ୍ୟଙ୍କର ତେଜ ସହ୍ୟ କରି ନପାରିବାରୁ ବିଶ୍ୱକର୍ମା ତାହାଙ୍କର ଶାଣ ଯନ୍ତ୍ରରେ ସୂର୍ଯ୍ୟଙ୍କର ତେଜ କମାଇ ଥିବାର ପୁରାଣରେ ଅନୁସନ୍ଧେୟ ।

## ( ୫୨ ) ବୈଦିକ ପ୍ରକୃତ ।

ଦେଖି ଏହି ବୈଭାତିକ * ବିଭବ ସମ୍ଭାର ,
ପୁଷ୍ପୋଦ୍ଗମ ଛଳେ ଦେଖ ବନେ ଝୁରିଅଛି ,
କଣ୍ଟକିତ ହୋଇଲାଣି , ପ୍ରଣୟ ବିକାରେ ,
ପ୍ରଭାତ ତୁଷାରାନିଳ ପରଶ ମାତ୍ରକେ ।
ବୃକ୍ଷ ଚୂଳେ ବସି ପିକ ସଙ୍ଗୀତ — ଲହରୀ
ଢାଳୁଅଛି , ସୁମଧୁରେ ବିଶ୍ୱ ବିମୋହନ ,
କୁକ୍କୁଟ - ମଙ୍ଗଳ - ଭେରୀ, ଭ୍ରମର ଗୁଞ୍ଜନ
ବହି ଆଣୁଅଛି ଦୂରୁଁ ପରାଗ - ମଣ୍ଡନ
କୁସୁମକେଦାରେ ଚଳି ଚଳି ଗନ୍ଧବହ ।
ସ୍ଥାଣୁ ଶିରେ ବର୍ହ ତୋଳି ବର୍ହୀ ସମାଦରେ
ପ୍ରିୟା ଅଗ୍ରେ ନାଚୁଅଛି ବେଗେ ଫେରି ଫେରି ;
ନୀଳମଣି ଜିଣା ପକ୍ଷ, ପ୍ରଭାତ କିରଣ,
ରଞ୍ଜୁଅଛି ବର୍ଣ୍ଣୋଜ୍ଜ୍ୱଳେ ବିବିଧ - ମଣ୍ଡନ
ବାସବ ବାଞ୍ଛିତ ଇନ୍ଦ୍ରକୋଦଣ୍ଡ ସମାନେ ।
ପୂଷା ବନ୍ଦାପନା ପାଇଁ ଉଷାର ଅଗ୍ରତେ
ପରାଗ - କୁଙ୍କୁମେ ଲିପ୍ତ କରି କଳେବର ,
ମଲ୍ଲିକା - କୋରକ - ଶଙ୍ଖ ବଜାଏ ମଧୁପ ।
ଏ ଉତ୍ସବେ ଶୌର୍ଯ୍ୟନିକି ସମ୍ଭାଦିବା ପାଇଁ
ନୀଡ଼ୁଁ ଉଠି ନୀଡ଼ୋଦ୍ଭବା ସରସ୍ୱତୀ କୂଳେ,
ମତ୍ତ କଳରବେ, ନିଜ ପ୍ରିୟାର ସଙ୍ଗତେ ।

( * ) ପ୍ରାତଃ କାଳୀନ

ଉଇଁଲେଣି ବିଭାବସୁ ଚକ୍ରବାଳ ଭେଦି
ସୌଦାମଣି ପାରିଜାତ ଅବତଂସ ରୂପି;
ହିରଣ୍ମୟ ରଥେ ଭାନୁ, ଅନୁରୁ ସହିତେ
ମର୍ତ୍ତ୍ୟରେ ଅମୃତ ଧାର କରନ୍ତି ବର୍ଷଣ ।
ଋତ୍ୱିକ ଉଦ୍ଗାତା ହୋତା ପୋତା ଅଧ୍ୱର୍ଯ୍ୟୁ
ସରସ୍ୱତୀ କୂଳେ ମହା ଅଧ୍ୱର – ପ୍ରାଙ୍ଗଣେ,
ଅରଣୀ ମନ୍ଥନେ ବୀତହୋତ୍ରଙ୍କୁ ଆହ୍ୱାନ,
ସମ୍ପାଦନ୍ତି ଦକ୍ଷ, ବିଧି- ବିହିତ ସମ୍ମାନେ ।
 କେ ଏ ଯୁଗଜ୍ଞାନଯୋଗୀ ସବିତାଉଦ୍ଦେଶୀ
ତ୍ରିଷ୍ଟୁଭ – ଗାୟତ୍ରୀ ଛନ୍ଦେ, ସୋମରସେ ମତ୍ତ,
ସୁଲଳିତ ତାନେ ମହା ପୁଲକ ଅନ୍ତରେ
ଗାଏ ମହା ଗୀତ, ଧ୍ୟାୟି ବ୍ରହ୍ମାଣ୍ଡ ଈଶ୍ୱର ।
କେମନ୍ତେ ଏ ମହାଭାବ ରଶ୍ମି- ହୃଦାକାଶେ
ଧ୍ରୁବ ଜ୍ୟୋତି ରୂପେ ଫୁଟି ମୋହିଲା ଅନ୍ତର ;
ଦୂରବଶେ ଜ୍ଞାନ – ରବି ଉଦୟକୁ ହେର
ଫୁଲିକିଲା ; ସତେ ଅବଗ୍ରହେ ମରୁପ୍ରାନ୍ତେ
ଉଦିଲା ଅମ୍ବରେ ଅବା ବାରିଦ – ପଟଳ ?
ଆବୃତ୍ତି କରିଲା ଯୁବା ସେହି ମହାଗୀତ ;
ଗୀତ ସ୍ୱରେ ମୁଗ୍ଧହୋଇ ସେ ମୁଗ୍ଧା ରୂପସୀ
ବିଶ୍ୱ ପ୍ରେମେ ମତ୍ତ ହୋଇ ଆଲିଙ୍ଗି ପ୍ରିୟକୁ,
ଚୁମ୍ବିଲା ସରାଗେ ପକ୍ୱ - ବିମ୍ବ – ଯୁବାଧର ।

ପ୍ରତିଦାନେ ପ୍ରେମମଣି ଲଭି ଇଚ୍ଛାବତୀ ,
ପ୍ରକୃତି ପୁରୁଷ ରୂପେ ଅନ୍ୟୋନ୍ୟ ମିଳନେ
ବସ୍ତୁ ହିତ-ବ୍ରତ-ବୃଦ୍ଧି ସାଧିଲେ ଦମ୍ପତି ।

—※ଃ୦ଃ※—

# ଉତ୍ସର୍ଗ ।

ସାହିତ୍ୟକୁଞ୍ଜକଳକଣ୍ଠ, ଭକ୍ତବର

ରାୟ ଶ୍ରୀ ମଧୁସୂଦନ ରାଓ ବାହାଦୁର

ମହାଶୟଙ୍କ କରକମଳେଷୁ ।

ଉତ୍କଳ ଶାରଦାପୀଠେ ସାର୍ବଭୌମ ସତ୍ତ୍ୱ
ମଣ୍ଡିଅଛ ସିଂହାସନ ବାଗ୍ଦେବୀ-ପ୍ରସାଦେ ;
ବାଣୀ-ଆରାଧନା ପାଇଁ ମନୀଷିସତ୍ତମ !
ଯେକାଳେ କବୀଶ ମନ ବ୍ରାହ୍ମୀ-ପାଦ-ମୂଳେ,
ଭାରତୀ-ବଲ୍ଲକୀ-ପୁଣ୍ୟ-ମଧୁର-ଝଙ୍କାର
କବି-କର୍ଣ୍ଣ-ରସାୟନ ବହି ଆସି ସତେ
କଳ୍ପନା-ମାରୁତେ, ପ୍ରାଣ ପୁଲକାଏ ତବ,
ତେଶୁକ ରସଜ୍ଞ ! ତାର ପୁଣ୍ୟ ମଧୁତାନେ,
ମୋହିଅଛ ମହାପ୍ରେମେ ଉତ୍କଳଭୁବନ ?
ଯୋଗ୍ୟ ପାତ୍ର ମଣି, ଏବେ ବାଣୀ-ବର ପୁତ୍ର
ଅର୍ପିଲି ଏ ଗୀତିକାବ୍ୟ ତବ ସନ୍ନିଧାନେ,
କରନ୍ତୁ ଗ୍ରହଣ :—

ଆପଣଙ୍କର

ଶ୍ରୀ ସଚ୍ଚିଦାନନ୍ଦ ତ୍ରିଭୁବନଦେବ

# ଭୂମିକା ।

ଅଭିବ୍ୟକ୍ତି ବାଦ ସୃଷ୍ଟିତତ୍ତ୍ୱର ଅନୁଶୀଳନ ପକ୍ଷେ ବର୍ତ୍ତମାନ ଯୁଗରେ ଯୁଗାନ୍ତର ଉପସ୍ଥିତ କରିଅଛି , ଅଜୈବପଦାର୍ଥରୁ ଜୈବପଦାର୍ଥର ସୃଷ୍ଟିତତ୍ତ୍ୱ ଖ୍ରୀଷ୍ଟପ୍ରଭୁ-ଜନ୍ମ ୬୦୦ ବର୍ଷପୂର୍ବେ ଏନାକ୍ସିମେଣ୍ଡ୍ରାର୍ ନାମକ ଅଁସିଆ-ମାଇନରବାସି ଜନୈକ ପଣ୍ଡିତ ନିର୍ଦ୍ଦେଶ କରିଥିଲେ ।

ନୀହାରିକାରୁ ଏହି ସୌର ଜଗତର ସୃଷ୍ଟି ହେବାର ତର୍କଣା ବର୍ତ୍ତମାନ ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ପ୍ରମାଣିତ ହୋଇଅଛି । ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଅନନ୍ତ ଗଗନ ମଣ୍ଡଳକୁ ନିରୀକ୍ଷଣ କଲେ ବର୍ତ୍ତମାନ ମଧ୍ୟ—
Orion, Canes Venatici
Lyra ଏବଂ Andromeda, - ଇତ୍ୟାଦି ନୀହାରିକାପଟଳରୁ ସୌର ଜଗତର ସୃଷ୍ଟି ହେଉଥିବାର-ତତ୍ତ୍ୱ ଦେଖା ଯାଉଅଛି ।

ପୁନଶ୍ଚ ଜୀବାଣୁ ଓ ଉଦ୍ଭିଦାଣୁ ଏହି ଉଭୟଙ୍କୁ ଅଣୁବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ପରୀକ୍ଷଣ କଲେ ପ୍ରଟୋପ୍ଲେଜମ୍ ( ପ୍ରଥମସ୍ପନ୍ଦନ ) ଏବଂ ଏମୋବା (Amoeba) ନାମକ ଜୈବପଦାର୍ଥରୁ ଏହି ଉଭୟ ସୃଷ୍ଟି ହୋଇଥିବା

ପ୍ରମାଣିତ ହେଉଅଛି । ସେହି ପ୍ରଟୋପ୍ଲେଜ୍ମ୍ ବା ଅଦ୍-
ଭୂତ ଜଡ଼ ଚେତନ ଉଭୟର ଅନ୍ତରାଳରେ ସଂଯୋ-
ଜକ ସୃଷ୍ଟି ପରି ବୋଧହୁଏ । ଯେଉଁ ଅଣୁ କି
ଚେତନାଚେତନର ଆରମ୍ଭକ ଅଙ୍କୁରେ ଚେତନ
ରୂପେ ଜଡ଼ରୁ ପ୍ରଥମେ ସୃଷ୍ଟ ହୋଇଅଛି । ଏଥିରୁ
ବିଶ୍ୱାସ କରାଯାଇପାରେ ଯେ ଜଡ଼ ଏବଂ ଚେତନ
ଏହି ଉଭୟ ଜଡ଼ରୁ ପ୍ରଥମେ ସୃଷ୍ଟ ହୋଇଅଛି । ପରେ
ସମୁଦ୍ରାଦ୍ଧ ଉତ୍ପନ୍ନ ହୋଇ ଜଗତର ସୃଷ୍ଟିର ସୂତ୍ରପାତ
ହେଲା । ଆପରମାଣୁ ନିଃନାଶ କୌଣସି ପଦାର୍ଥର ନାହିଁ ।
ଏଣୁ ଏହି ସୃଷ୍ଟିର କ୍ରମବିକାଶ ହୋଇଅଛି । ଜୀବନସଂଗ୍ରାମରେ
ବିଜୟୀ ପ୍ରାଣିବର୍ଗ କାଳର କରାଳ କବଳ ଭେଦକରି
ଉନ୍ନତ ରୂପରେ ଅଭିବ୍ୟକ୍ତ ହେଉ ଅଛନ୍ତି । ଯେଉଁ-
ମାନେ ତାଦୃଶ ଜୀବନସଂଗ୍ରାମରେ ପରାଜୟ ଲାଭ କରୁ-
ଅଛନ୍ତି ସେମାନଙ୍କ କଳେବରକୁ ଏହି ବିଶ୍ୱଧାତ୍ରୀ ପୃଥିବୀ
ସ୍ମୃତି ସଙ୍କେତ ପାଇଁ ପ୍ରଶୀଳ ( Fossil ) ରୂପେ
ନିଜ ଗର୍ଭରେ ଧାରଣ କରୁଅଛି ଯଦ୍ଦ୍ୱାରା ସ୍ତରମାନଙ୍କରୁ
ଜୀବତତ୍ତ୍ୱମାନ ସ୍ପଷ୍ଟ ପ୍ରମାଣିତ ହେଉଅଛି ।

ଏଣୁ ଏହି ଅଭୂତ ଆବିଷ୍କାର ବିଶ୍ୱବିସ୍ମାପକ ହୋଇ
ନିଜର ଉପାଦେୟତାକୁ ଶିକ୍ଷିତ ସମାଜରେ କ୍ରମେ ୨
ବଢ଼ାଉଅଛି । ତେବେ ଏହି ଅଭିବ୍ୟକ୍ତିବାଦ ଯେ ହିନ୍ଦୁ
ଆର୍ଯ୍ୟମାନଙ୍କର ମସ୍ତିଷ୍କରେ ପ୍ରବେଶ କରି ନ ଥିଲା
ଏହା ନୁହେଁ, ଖ୍ରୀଷ୍ଟ ପ୍ରଭଲୋମ ବ ୧୫୦୦ ର୍ଷ ପୂର୍ବେ

ଦେବହୂତି ହୃଦୟନନ୍ଦନ ଊର୍ଦ୍ଧ୍ୱରେତା କର୍ଦ୍ଦମ ପ୍ରଜାପତିଙ୍କ ପୁତ୍ର କପିଳ ମହର୍ଷି "ପ୍ରକୃତିରୁ ଏହି ସ୍ଥାବର ସ୍ଥାବରର ସୃଷ୍ଟି ହୋଇଅଛି" ବୋଲି ଲେଖି ଯାଇଅଛନ୍ତି । କପିଳଙ୍କ ମତରେ ତ୍ରିଗୁଣମୟୀ ପ୍ରକୃତି ଏହି ବସ୍ତୁ ରୂପରେ ପରିଣତ ହୋଇଅଛି ତହିଁରୁ କ୍ରମେ୨ ଜଗତର ସୃଷ୍ଟି ହୋଇଅଛି ।

ବିଜ୍ଞାନବାଦୀ ମାନେମଧ୍ୟ ଶକ୍ତି ଓ ପରମାଣୁରୁ ଜଗତ ସୃଷ୍ଟିହେବା ସିଦ୍ଧାନ୍ତ କରନ୍ତି । ସୁତରାଂ ଅଭିବ୍ୟକ୍ତିବାଦ ଏବଂ କପିଳଙ୍କ ପ୍ରକୃତିବାଦ ମୂଳତଃ ଏକ ସିଦ୍ଧାନ୍ତରେ ଉପନୀତ ହୋଇଅଛି । ଏହି ବିଚିତ୍ର ତତ୍ତ୍ୱବୋଧ ସମ୍ବନ୍ଧରେ ମହାମତି ପାଶ୍ଚାତ୍ୟପଣ୍ଡିତ କ୍ୟାଣ୍ଟ୍, ଲାପ୍ଲାସ୍, ହର୍ସେଲ୍, ଏବଂ ହେକ୍‌ଲ୍, ଡେକ୍‌ସ୍‌ବାର୍ଡ୍, ଡାର୍‌ୱଇନ୍ ପ୍ରଭୃତି ମହାତ୍ମାମାନେ ସଚିତ୍ର ବହୁଗ୍ରନ୍ଥ ପ୍ରଣୟନ କରି ଶିକ୍ଷିତ ସମାଜର କୃତଜ୍ଞତା ଭାଜନ ହୋଇ ଅଛନ୍ତି ।

ମୁଁ ସେହି ଗ୍ରନ୍ଥମାନ ଆଲୋଚନା କରିବା ସମୟରେ ଏହି ବାଦର ଆଭାସ ଉତ୍କଳସାହିତ୍ୟରେ କାବ୍ୟ ଭଙ୍ଗୀରେ ପ୍ରବେଶ କରାଇବାକୁ କୌତୂହଳୀ ହୋଇ ବର୍ତ୍ତମାନ ଏହି ଅଭିନବୋଦ୍ୟମରେ ପ୍ରୟାସୀ ହୋଇଅଛି । ଏହି ବିଷୟ ଯେ ପ୍ରକାର ଗୁରୁତର ତହିଁରେ କବିତାର ମାଧୁର୍ଯ୍ୟ ରକ୍ଷାକରି ପୂର୍ଣ୍ଣାବୟବ ରୂପେ ଏହି ଅଭିବ୍ୟକ୍ତିବାଦକୁ ବର୍ଣ୍ଣନା କରିବା ଅସମ୍ଭବ ! ତଥାପି କୌତୂହଳ ପରବଶହୋଇ ବର୍ତ୍ତମାନ ଏହି କ୍ଷୁଦ୍ର ପୁସ୍ତିକା

ଖଣ୍ଡି ପ୍ରଣୟନ କଲି । ଏହା ପ୍ରିୟପାଠକମାନଙ୍କର କିଞ୍ଚିନ୍ମାତ୍ର ହୃଦୟାକର୍ଷକ ହେଲେ ଶ୍ରମ ସାର୍ଥକ ମନେ କରିବି । ଇତି

ତା ୨୮।୬।୧୯୧୧
ଦେବଦୁର୍ଗ- ବାମଣ୍ଡା । } ପ୍ରଣେତା

# ପ୍ରକୃତି ।

ନଥିଲାରେ ଯେବେ ଏହି ବ୍ରହ୍ମାଣ୍ଡ–ବିଭବ,
ନ ଥିଲା ଏ ଚନ୍ଦ୍ର, ତାରା, ଦେବ ଦିନମଣି,
ନ ଥିଲା ଏ ଶଚ୍ଚନ୍ଦ୍ରିକା ବ୍ୟୋମ–ନିକଷର —
ଚାମୀକର ରେଖାମୟୀ ବ୍ୟୋମ-ଉଦ୍ଭାସିଣୀ ;
ନ ଥିଲା ଏ ମନ୍ଦ୍ରନାଦ, ଦିଗନ୍ତ ନିର୍ଘୋଷି
ଅନ୍ତ୍ରନାଦ ଜୀମୂତର ପ୍ରାବୃଟେ ମୁଦିର ;
ଦ୍ୟୁମଣି ବର୍ଣ୍ଣବିଭବେ ରଞ୍ଜି ବ୍ୟୋମପଟ
ପ୍ରାଚୀ ପ୍ରତୀଚୀ - ତୋରଣ ବାସବ–କୋଦଣ୍ଡ;
ନ ଥିଲା ଏ ଜ୍ୟୋତ୍ସ୍ନାପୂର, କ୍ଷୀରୋଦୁଁ ଉତ୍ଥିତ
କ୍ଷୀରାବ୍ଧି- ତନୟା ଯହିଁ ଏ ପୀୟୂଷଧାନ୍ୟ ;
ପୃତୀ କମଳବନ ରାଗ ସୁରଞ୍ଜିତ ,
ବାସବ - ଦ୍ୱାର - ଦେହଳୀ - ଅର୍ଗଳ-କୁଞ୍ଚିକା ,
ତ୍ୱିଷାମ୍ପତି -. ଦୂତୀ ଉଷା ଜଗତ ପ୍ରକାଶିନୀ ,
ନ ଥିଲା ଯେକାଳେ ବିଶ୍ୱ ବିଶ୍ୱ - ବିମୋହିନୀ ;
ନ ଥିଲା ଯେକାଳେ ଧୂମକେତୁ କେତୁରୂପୀ
ଦହ୍ୟମାନ ପୁଚ୍ଛ ପିଣ୍ଡ ଗଗନ ପରଶି
ଆବୃତ ବିଶାଳ ନଭ ଗଢି ପଥ ଧରି ;
ନ ଥିଲା ଏ ଦିବ୍ୟାଲୋକ ଦେବମନୋପମ
ସୁସ୍ୱପ୍ନ ପ୍ରଶମନ ଗାଢ଼ ତିମିରର ।

କେବଳ ଥିଲାରେ ସେହି ଅନନ୍ତ ମହିମା
ଶକ୍ତି ରୂପେ ପରମାଣୁ ପୁଞ୍ଜେ ପ୍ରକୃତର ;
ପରମାଣୁ ସଙ୍ଗେ ମିଶି ଏ ବସ୍ତୁ ଶକତ
ଚଳାଇଲା ଯାହାର କା ( କ ) ଜ୍ୟୋତିଃପୁଞ୍ଜ ରୂପେ,
( ଭ୍ରୂଣାବସ୍ଥା ଯେଣୁ ଏହା ବସ୍ତୁ ପ୍ରକୃତର ) ;
ଧନ୍ୟ ଭାଗ୍ୟବାନ ସେହି ଏ ମହୀମଣ୍ଡଳେ
ଜ୍ଞାନଜ୍ୟୋତ ଫୁଟି ଯାର ମଣ୍ଡିଲା ମୌଳିକୁ ;
ଧନ୍ୟ ହେ ପ୍ରକୃତବାଦୀ କପିଳ ମହର୍ଷି
'ଆମୂ ଅର୍ଥ ସୃଷ୍ଟିତତ୍ତ୍ୱ' ଏ ଶାନ୍ତ ବାଣୀ
ପ୍ରଚାରିଲ, ପ୍ରସରିଲା ଜଗତ - ମାନସେ
( ଶକ୍ତିଯୋଗେ ପରମାଣୁ ବସ୍ତୁ - ପ୍ରବୋଧକ )
ପ୍ରକୃତ ବକୃତ ତବ ମହତତ୍ତ୍ୱ ସେହି ।
ଏହି ସେହି ଭୂମା ! ସେହି ବୈଦିକ ଯୁଗର,
ଅର୍ଚ୍ଚିବ ବସ୍ତୁଜ ଯେଉଁ ମାନବ ଅନ୍ତରେ
ବସାଇ ଥିଲା ତାହାକୁ ଦେବ - ସିଂହାସନେ,
ଭୁବନମୟୀ ପ୍ରକୃତର ଆରାଧନା ରୂପେ
ନାନା ଛନ୍ଦୋମୟୀ ସେହି ବୈଦିକ - ବାଣୀରେ
ହେଉଥିଲା ତାଙ୍କ ମୁଖେ ଯେ ଯୁଗେ ସଙ୍ଗୀତ ;

( କ ) Nebula ଜଗତ୍ ସୃଷ୍ଟିର ଅଦ୍ଭୁତ ଅକାଶ ସ୍ଥିତ କ୍ଷୀଣାଲୋକବିଶିଷ୍ଟ ପଦାର୍ଥ । ଦୂରବୀକ୍ଷଣ ଯନ୍ତ୍ରରେ ଦେଖିଲେ ଏହା ନୀହାର ପରି ଦେଖାଯାଏ ଏଣୁ ଏହାର ନାମ ନୀହାରିକା ହୋଇଅଛି ।

ବୀଣାପାଣି ସରସ୍ୱତୀ – ଶ୍ରୀକର – ପଙ୍କଜୁଁ
ଝରିଲା ଯେ କାଳେ କାବ୍ୟ–ମକରନ୍ଦ – ଆସାର
ସ୍ଫୁରିଲା ସେକାଳେ କାବ୍ୟ–ବନ–କଳକଣ୍ଠୁ
ବ୍ୟାସ–ରସନାରୁ ପୁଣି ବାଲ୍ମୀକି – ଶ୍ରୀମୁଖୁଁ ,
ବିରାଟ–ପୁରୁଷ ନାମେ ବିଶ୍ୱ – ମୂଳାଧାର
ମହାଗୀତ, ମିଶିବାକୁ ବୀଣାର ମୂର୍ଚ୍ଛନେ ;
ଅଦ୍ୱୈତବାଦୀ ଶଙ୍କର ଶଙ୍କର – ଉପମ
ପ୍ରଚାରିଲେ ଯେ କାଳରେ ଧର୍ମ୍ମ ଭକ୍ତି ରୂପି
ମହାଜ୍ଞାନ, ସ୍ଫୁରିଲିକି ବିଜ୍ଞାନ – ତେଜସ
କାଳତ୍ରୟ ଦର୍ଶୀ ସେହି ତପୋଧନ ମନେ
ପୁଞ୍ଜୀଭୂତ ନୀହାରିକା କାରଣ– ଶରୀରେ ।
ସୃଜିଲା ଏ ଜ୍ୟୋତିର୍ମ୍ମୟ ଦେବ ଗ୍ରହପତି
ଏହି ସୌର ଜଗତର, ଆବର୍ତ୍ତନେ ମାତି ;
ପ୍ରାଭାକର ଜଗତର ସତ୍‌ଫଳ ରୂପିଣୀ
ବିକଶିଲା ବିଶ୍ୱେ ଏହି ଧରିତ୍ରୀ ସୁନ୍ଦରୀ ;
ବାଷ୍ପ ସମାଚ୍ଛନ୍ନ ସେହି ଭୂଭାଗ – ପ୍ରାନ୍ତରେ
ପ୍ରବେଶୁ ନ ଥିଲା ତେବେ ତରଣୀମୟୂଖ ,
ପରମ ଜ୍ୟୋତି ଯେସନ ନ ହୁଏ ପ୍ରକାଶ
ଅଜ୍ଞାନ - ତମସାଚ୍ଛନ୍ନ ଅଜ୍ଞାନୀ - ମାନସେ ;
ଲୀଳାମୟ ବ୍ରହ୍ମାଣ୍ଡର ବ୍ୟାପ୍ତ ବାଷ୍ପରାଶି ,
ବିବର୍ତ୍ତିଲା ବହୁଯୋଜି ବାରିଦ – ଘଟଲେ ;
ସ୍ୱୟମ୍ଭୂ ସୃଷ୍ଟି – ଉଦ୍ରେକ ଅଧିବାହ ପାଇଁ

ଯେତେବେଳେ ସୌଦାମିନୀ ଗଗନ ନିର୍ଘୋଷି
ନୀରଜଳ ଭୂମା-ପଦେ ଝଟକିବା ଛଳେ ;
ସେକାଳେ ଭୂଧର ! ତୋର ଗମ୍ଭୀର ଛନ୍ଦରେ
ଉଠିଲା ମଙ୍ଗଳଧ୍ୱନି ବାଦ୍ୟନାଦ ରୂପେ ;
ଅଭିଷେକ ବାରିପୂରେ ପୂରିଲା ଧରଣୀ ।
କୁଜ୍ଝଟୀ ଗରଭେ ଲୁପ୍ତ କାସାର-ପଙ୍କଜ —
ପସ୍ୟେ ଅମରଧାମ-ମନ୍ଦାକିନୀ ଯାରେ
ବିକଶି ଥିଲେହେଁ ଫୁଟି କୈରବାଳୀ
ବ୍ୟୋମକେଶ ଭର୍ଗଙ୍କର ମୌଳିମଣି ପରି
ଦିଶୁଥିଲା ରେଖାମାତ୍ର ବଙ୍କିମ ଛଟାରେ ;
ଜ୍ୱାଳାମୟ ସହସ୍ରାଂଶୁ ରକ୍ତିମା ରଜଶ୍ରୀ
ସମ୍ମିଶ୍ରଣ ଯୋଗେ ସତ୍ତ୍ୱମୟ ବ୍ୟୋମପଟ
ଆଭାଷିଲା, ଅର୍ଦ୍ଧରକ୍ତ ଅର୍ଦ୍ଧସ୍ୱଚ୍ଛ ହୋଇ
ଚତୁର୍ଥୀ-ପ୍ରକୃତ ଅର୍ଦ୍ଧ-ନାରୀଶ୍ୱର ପରି ;
ଜଗତ ବିଗମ କାଳେ ଯାଙ୍କ ଭାଳପଟୁଁ
କୋଟିଭାନୁ ତେଜୋପମ ଲୋଚନ-କୃଶାନୁ
ଧକଧକେ ଜ୍ୱଳି, ବିଶ୍ୱବ୍ରହ୍ମାଣ୍ଡ ବିବର
ବିଭ୍ରମେ ପିଣ୍ଡିତ କରି ଲବଣ ଜଳଧି
ଚଟଚଟ ଶବ୍ଦଶଂସି ଲବଣ କୂଟକୁ
କ୍ଷଣମାତ୍ରେ କରିଥିଲା ଭସ୍ମ ଅବଶେଷ ।
ଏ କାଳରେ ଶୀତଭାନୁ ଶୀତଳ ମୟୂଖ
ଢାଳନ୍ତେ ଅମୃତ ଧାରା ମୃତ ସଞ୍ଜୀବନୀ,

ଶୀତଳ ହୋଇଲା ସେହି ସୃଷ୍ଟି ଦ୍ରବମୟୀ ।
　ଗୁହ୍ୱରେ ଏକାଳେ ନଗ ! ସୋଦର ପ୍ରଥମ !
ସର୍ବାଗ୍ରେ ଦେଖିଲୁ ବିଶ୍ୱ-ସୃଷ୍ଟିର ପ୍ରକ୍ରିୟା
ନ ଥିଲା ଯେକାଳେ ଗଚ୍ଛଚୟ ବସୁଧାର ;
ଉନ୍ମନେ ଭୂପୃଷ୍ଠରେ ଦେଖିଲୁ ସର୍ବାଗ୍ରେ
ଅନନ୍ତ ଆକାଶେ କୋଟି କୋଟି ଗ୍ରହମଣି
ସୃଜୁଛନ୍ତି ତନୁ ତାଙ୍କ ନୀହାରିକା ଛଳେ ;
ଶୁଣିଲୁ ପ୍ରଥମେ ତୋର କର୍ଣ୍ଣ ବିବରରେ
ଘନଘଟା ଜୀମୂତର ଦମ୍ଭୋଳି ନିର୍ଘୋଷ ;
ଇରମ୍ମଦ-ସହଚରୀ କାନ୍ତ - ବିଧାୟିନୀ
ଦେଖିଲୁ ସର୍ବାଗ୍ରେ ଶୁଭ୍ର ଦାମିନୀ - ଝଟକ
ବ୍ୟୋମପଟେ, ଛୁଟିଲାରେ ଦିଗନ୍ତ ପ୍ରସର
ବିଶ୍ୱାଲୋକ ଶକ୍ତିମତୀ ଜ୍ୟୋତିର୍ମୟୀ ଯେବେ
ପ୍ରତି ଦିଗ୍ବଳୟେ ସୃଜି ଜ୍ୟୋତିଃ ପ୍ରସ୍ରବଣ ;
ସପ୍ତବର୍ଣ୍ଣ ସୁରଞ୍ଜିତ ବାସବ - କୋଦଣ୍ଡ
ପଡ଼ିଲା ତୋ ନେତ୍ରପଥେ ସର୍ବାଗ୍ରେ ଭୂଧର !
ବ୍ୟୋମ - ସଞ୍ଚାରିଣୀ ଦେବୀ ମନୋମୟୀ ଊଷା
ଆମନ୍ତ୍ରିଲା କି ମିତ୍ରରେ, ପୌରନାରୀ ଦ୍ୱାରେ
ତୋରଣ ସଜାଡ଼ି, ଦେଖି ଅସ୍ତାଚଳ ଚୂଡ଼େ
ହିରଣ୍ମୟ ରଥେ ଦେବ ଦେବଗ୍ରହପତି ;
ପୌର୍ଣ୍ଣମାସୀ - କଳାନାଥ ତୋହରି ଅଗ୍ରତେ
ଫୁଟିଲେ ବ୍ୟୋମ କାସାର ପୁଣ୍ଡରୀକ ପରି ;

ଓଷଧୀଶ- ଦ୍ରବ୍ୟଙ୍କର ପରଶ ବଶରେ
ଭୈଷଜ୍ୟ ଭଣ୍ଡାର ରୂପେ ମଣ୍ଡିଲୁ ଅବନୀ ;
ଉଷାର ପ୍ରଥମହାସ୍ୟ ସ୍ଫୁରିଲା ଯେ କାଳେ
ପାରିଜାତ କିରୀଟେନ ଉଦୟ – ଅଚଳେ,
ଉଦ୍‌ବୋଧିଲ ନୂଆ ହୋଇ ପ୍ରକୃତି ସୁନ୍ଦରୀ ;
ବକ୍ଷ ପ୍ରାଣ ସ୍ଫୂର୍ତ୍ତି ସେହି ଜ୍ୟୋତି ମହୋତ୍ସବ
ଆଶୀର୍ବାଦ ରୂପେ ତୋର ଉତ୍ତୁଙ୍ଗ ଶିଖରେ
ପଶିଲା ମହାନନ୍ଦରେ ପହିଲେ ଭୂଧର !
ଅର୍ଦ୍ଧ ପାର୍ଶ୍ୱେ ଧୂମକେତୁ ଦେଖିଲୁ ଗଗନେ
ଜ୍ୟୋତିର୍ମ୍ମୟ ବସ୍ତୁ ଯେବେ ଗ୍ରହ ଅନ୍ତରାଳେ
ଉଠିଲା ଉଦ୍‌ଭାସି ବ୍ୟୋମ - ଉର୍ଦ୍ଧ୍ୱ ପୂର୍ଣ୍ଣ ପଥ ,
ସେ ତେଜ ଦୃଷ୍ଟେକେ ଲୁଚିଗଲେ ଗ୍ରହବ୍ରଜ
ଯେସନେ ତାରକାଅନ୍ତ ଖଦ୍ୟୋତନ ତେଜେ ;
ଭୀମପୁଚ୍ଛ ବ୍ୟାପିଯାଇ ଆକାଶ ଦେହରେ
ବିନଶ୍ୱର ସୃଷ୍ଟିତତ୍ତ୍ୱ ଦେଖାଇଲା ତୋରେ ,
ଦେଖିଲୁ ଯେ ବାଷ୍ପେ କୋଟି କୋଟି ଧୂମକେତୁ
ନୃତ୍ୟନ୍ତ ତନୁ ସୌର – ଭଜନ ପାଇଁକି ;
ଦେଖି ଏହି ପ୍ରକୃତିର ବିଭବ – ଭଣ୍ଡାର
ପୁଲକିଲୁ ପର୍ଣ୍ଣୀତରୁ (ଖ) ଛଳେ ମହୀଧର !
ବସିଲ ନନ୍ଦନ କିରେ ତୋ ଦେହେ ପ୍ରକୃତି ?

---

( ୨ ) ଭୂପୃଷ୍ଠରେ ପ୍ରଥମରେ Fern ଜାତୀୟ ବୃକ୍ଷର ଉତ୍ପନ୍ନ ହୋଇଥିଲା ।

ନିସର୍ଗ-ଲକ୍ଷ୍ମୀର ଲୀଳା ଅଗ୍ରେ ପାଇଁକି । —
ଛେଦିବ ପରମାଣୁ ଭୁକ୍ତି ଧୂଳି ସର୍ବାଗ୍ରେ
ତେଣୁ କି ତୋ ନାମ "ଧର" ବ୍ୟାପିଲା ବିଶ୍ୱରେ ?
ଦେଉଥିଲା ଯେ କନ୍ଦର ପ୍ରତିଧ୍ୱନି ଗିରି
ପ୍ରଳୟ ସମୟ ଶଂଖୀ ଭୈରବ ଶବଦେ
ଦମ୍ଭୋଳି - ନିକ୍ଷେପୀ ଯେବେ ଦମ୍ଭୋଳି ନିକ୍ଷେପି
ଦ୍ରବିଲେ ଧାତ୍ରୀ - ପକ୍ଷ୍ମାତେ ସର୍ବଂସହାଧାତ୍ରୀ ,
କାଟିଦେଲା ମୂଳ ତୋତେ ସେକାଳେ ଭୂଧର !
ହରିଙ୍କ ସଲିଳ ଯେତେ କନ୍ଦର ଗର୍ଭରେ ;
ଝରିଲା ପୀୟୂଷ ଧାରା ତୋ ଗୁପ୍ତ ଗରଭୁଁ
ପଡ଼ିଲା ଧରଣୀ - ପୃଷ୍ଠେ କି ଯୋଗେ ଭୂଧର !
ପ୍ରକ୍ଷାଳି ତୋ ପାଦ, ପୁଣି ତୋର ପାଦପୀଠେ -
ରଚିଲା ସେ ହ୍ରଦାକାରେ ବିମ୍ବ ଦରପଣ
କାହିଁ ଦିବ୍ୟ ପ୍ରସ୍ରବଣ ନୀର- ଆସ୍ତରଣେ
ମଣ୍ଡିଲା ଇନ୍ଦ୍ର - କୋଦଣ୍ଡେ ତୋ ରମ୍ୟ ଶିଖର ,
ମଣିମୟ ମୁକୁଟେ କି ଦେବ ପ୍ରଭାକର
ପିନ୍ଧାଇଲେ ତୋତେ ସତେ ନଗେନ୍ଦ୍ର ମଣାସି ?
ନ ଥିଲା ସେ କାଳେ ନର ! ରକ୍ତ କୋକନଦ
ଭେଟିବାକୁ ପାଦେ ତୋର, ପ୍ରକୃତ ସୁନ୍ଦରୀ ,
ତେଣୁ ବୀଚିମାଳେ ଖଞ୍ଜି ପୌରଙ୍କର ଦ୍ୟୁତି
ଗୁନ୍ଥିଲା ରୁଚିର ମାଳା ଜ୍ୟୋତି - କୁବଳୟେ ,
ସେ କୁସୁମ ମାଳା ଯେନି ତରଙ୍ଗ ହସ୍ତରେ

ପ୍ରକୃତି ।

ଭେଟିଲା ନିସର୍ଗ-ଦେବୀ କାନ୍ତ କୁଳେଶ୍ୱରୀ;
ଯେ ଦିନ ବିହରି ତୋର କନ୍ଦରେ କନ୍ଦରେ
ଦେଖିଲା ନିମ୍ନରେ ତୋର ଶାଦ୍ୱଳ ପ୍ରଦେଶ
ଅବତରି ଅସ୍ତ୍ରହତେ ନୋହି ପ୍ରତିହତ
ଚଳିଲା ସେ ସିନ୍ଧୁମୁଖେ ଉତ୍ତାଳ ତରଙ୍ଗେ,
ସୁଗମ୍ଭୀର ସିନ୍ଧୁଘୋଷ ଶୁଣି ପ୍ରେମୋଲ୍ଲାସେ;
ଭେଟିଲା ଅଦୂରେ ତାର ମାନସ ଉଲ୍ଲାସି
କ୍ଷୁଭିତ ଶରୀର ଶୋଭି ଦେବ ସରିତ୍ପତି;
ଊର୍ମି କର ପ୍ରସାରଣେ ମହା ପ୍ରେମାଦରେ
ଆଲିଙ୍ଗିଲେ ଅପାଂପତି ପ୍ରଣୟ ଉତ୍ସବେ,
ଦେଖିଲୁ ସର୍ବାଗ୍ରେ କନ୍ୟା-ପ୍ରେମପଟାମ୍ବେ;
ଶୁଣିଲା ତୋ କର୍ଣ୍ଣପଥେ ପାରାବାର-ଘୋଷ
ଉତ୍ସବ ଭେରୀ ସମାନେ ଦୂର ଦିଗ୍ବଳୟେ,
ଅପାର ଫେନିଳ ଲୋଳ ନୀଳ ଅମ୍ବୁରାଶି
ଏକାକାର କରୁଅଛି ଭେଦ ଫିଙ୍ଗି ଦୂରେ
ଅନିଳ କ୍ଷୁଭିତ ସିତ ଜଳଦ ପଟଳେ—
ସମାଚ୍ଛନ୍ନ ସୀମାଶୂନ୍ୟ ଗଗନ ବିତାନେ ।
ତ୍ରିକୂଟ-ବିନ୍ଧ୍ୟଗତ ସଙ୍ଗେ ମହୀଧର !
ଜବଗତ ବିଭସିଲା ତୋ ନେତ୍ର ଅଗ୍ରତେ;
ବୁଦ୍‌ବୁଦ ସଦୃଶ୍ୟେ କେତେକାଳ ସିନ୍ଧୁ-ନୀରେ
ଦୀର୍ଘବ୍ୟାପ୍ତ କାଳନେମି-ପଲକ ମାତ୍ରକେ
ସାଙ୍ଗକରି ଭବଲୀଳା ରହି ସାକ୍ଷୀ ତୋତେ

ଉତ୍ତେଜ ଗଲେ ଅଚିରେ ବିକୁଳ ସମାନେ ;
ନାହିଁରେ ଏସନ ପୋତ ଏକାଳ -- ଅର୍ଣ୍ଣବେ
ପ୍ରତିକୂଳ କାଟିବ ଯେ ଉତ୍ତାଳ ତରଙ୍ଗ ।
କାଳର କବଳ - କୂଟ ଜାଲକୂଟ ଜ୍ୱାଳା --
ଗିଳୋଲ୍ବେ କେତେ କେତେ ସ୍ଥାବର ଜଙ୍ଗମ
କରିଛନ୍ତି ତନୁ ସଙ୍ଗେ ଜୀବନ ଅହୁତ,
ଏହି ସେ ଅଟଇ ଜୀବ - ଜୀବନ - ସଂଗ୍ରାମ ;
ଯୋଗ୍ୟତମ ଥାଇଁ ସିନା ସୃଷ୍ଟିର ପ୍ରକ୍ରିୟା
ଅନ୍ୟନାମ ତାର "ଭଗ୍ୟଭୋଗ୍ୟା ବସୁନ୍ଧରା" ।
ଚତୁର୍ଦ୍ଦନ୍ତ ଦନ୍ତାବଳ (୩) ବନ୍ୟଥୁ ଉଦ୍‌ଗାମୀ,
ତନ୍ତୀଭୂତ ରଦଶୋଭୀ ସଲୋମୀ ବାରଣ (୪),
ଅଜିନଧର୍ଷଙ୍କା ପକ୍ଷଧାରୀ ତିରଶ୍ଚୀନ,
କାଳସ୍ଖୁଣ ବିଦ୍ଧଦେହ ପ୍ରକୃତି - ଭଣ୍ଡାରେ
ସାଇତି ସଯତ୍ନେ ବେଗେ ହେଲେ ତିରୋହିତ ।
କ୍ରମ ବିକାଶର ସୂତ୍ରେ ବହୁବର୍ଷ ପରେ
ଦେଖିଲୁ ସଂସାରେ ଶୁଦ୍ଧ ମାନବ - ଉଦ୍ଭବ ;
ନାଚିଲା ଉତ୍ସୁଙ୍ଗେ ତୋର ଶିଖାବଳ ପ୍ରିୟା
ଉତ୍ଫୁଲ୍ଲ ଚକ୍ରୁ ଚନ୍ଦ୍ରକୀ ଶିଖଣ୍ଡୀ ସହିତେ ;

(୩) Tetrabelodon Angustidens

(୪) Eleplias Primigenius

କୋକିଳର କୁହୁ ପୁଣି ଝିଙ୍କାରି-ଝଙ୍କାର ,
ମୋହିଲା ଗୋ ଶ୍ରୁତିପଥ ସେକାଳେ ଉପର !
   ମଣ୍ଡିଲା ଷଡ଼୍ଋତୁ ଯେଣୁ ଅବନୀ ପୃଷ୍ଠରେ ,
ହଁସ , କାରଣ୍ଡବ , ଆଦି ଜଳ ବିହଙ୍ଗମ
ଖେଳିଲେ ନିର୍ଝରୀ ଯାଏ - ବିମଳ ସଲିଳେ ;
ପାରାବତ , ଜୀବଞ୍ଜୀବ କପୋତ - ଦମ୍ପତି
ରହିଲେ ସୁନୀଡ଼ ତୋର ସାନୁ - ଶିଖରରେ
ନଗରାଜ ! କୋଟି କୋଟି ଜୀବର ପୋଷକ !
ସୋଦର ସମ୍ଭାଷି ତୋରେ ଡାକିଲି ଆଦରେ
ମୋ ଅଗ୍ରଜ ଯେଣୁ ପୁଣି ଅଗ୍ରଜ - ଅଗ୍ରଜ ;
ପାରଥବେଗରେ ତୋତେଗ ମୃଗଯୂ ସହିଲେ
ତୋର ଅଙ୍କେ ଯାପିଛୁ ମୁଁ ଜାଗ୍ରତେ ଯାମିନୀ;
ତୁଙ୍ଗଶିଖେ ତୋର କେବେ ଶାର୍ଦ୍ଦୂଳ ଉତ୍ସଙ୍ଗେ
ମୃଗୟା ବିନୋଦେ ଭ୍ରମି ମୃଗୟୁ ମେଳରେ
ପାଉଥି ଅନ୍ତମେ , କ୍ଲାନ୍ତ ଘର୍ମାକ୍ତ ଶରୀରେ
ଝିଲ୍ଲୀ - ଝଙ୍କାରିତ ତୋର ଠଙ୍କ · ତରୁମୂଳେ
ବିଶ୍ରାମଇଁ ଆସି ଯେବେ ପରଶ୍ରାନ୍ତ ମନେ ,
ସେକାଳେ ପବନ ସ୍ୱଚ୍ଛ ହୀରଦ୍ରବ - ପ୍ରଭ —
ସଞ୍ଜୀବନୀ- ସୁଧାକଳ୍ପ ନିର୍ଝରିଣୀ - ବାରି
ଅନୁରତ କରେ ଶ୍ରାନ୍ତ କ୍ଲାନ୍ତ - ମାନସକୁ ।
ତେଣୁ ନଗରାଜ ! ତୁହି ଚିର ପରିଚିତ

ଚିରକାଂକ୍ଷୀ ମୁହିଁ ତୋର ସହବାସ ଲାଗି,
ରଚିଲ ଉତ୍ତୁଙ୍ଗେ ଶ୍ରେଣୀ ବସନ୍ତ - ନିବାସ ;
ହିମାଚଳର ଯାର ପାର୍ଶ୍ୱେ ସଂସର୍ଗାର୍ଥ ରୂପୀ
ଶ୍ମଶାନ , ଭୌତିକ-ଦେହ-ନିର୍ବାଣ ଦେହଳୀ ।

—※॰※—

# ସୁନ୍ଦରୀ ।

( ଗୌଢଣା । )

୧

ସ୍ୱ କହ୍ଲବ ମୁଦ୍ଧିଁ ମୋତ୍ରୁଦ – ନିକଷ–
କନକ – ରେଖା ରୂପିଣି ! ରେ
କେତକୀ ଶୁଭ୍ରାଙ୍ଗି ! କଚଘନ କେଶି !
ଛଇଳୀ ମୁକୁଟ ମଣି ! ରେ ।

ସୁନ୍ଦରି !

କଳକଣ୍ଠି ! ସୋହାଗିନିରେ
କେଳି – ଲାଳସ – ଗୃହୁ – ପଡୁ କପୋତ –
ଉନ୍ନତ – ବକ୍ଷଶୋଭିନୀରେ ।

୨

ଖେଳୁଛି ତୋଅଙ୍ଗେ ଲାବଣ୍ୟ–ବାରିଧି –
ଲଳିତ – ଗୀତ ଚଞ୍ଚଳରେ
ଶୈଳା – ଗଣ୍ଡସ୍ଥେ – ଛବିଳ ନୟନା !

ଆସ୍ୟ ନୀଳଚକ୍ରମଲ ରେ

ସୁନ୍ଦର !

ଖଦ୍ୟୋତିନ ସତେ ଉଇଁ ରେ

ଖରତରେ ତୋର ସୀମନ୍ତମଣିର
ଛୁଟଲେ ଶୋଭା ପ୍ରକାଶଇ ରେ ।

୩

ଗଙ୍ଗା ଅବତର ହିମାଦ୍ରି - ଶିଖରୁ
ସ୍ତନ - ଶୈଳ - ତଟ ଛନ୍ଦି ରେ

ଗଜେନ୍ଦ୍ରଗାମିନି ! ମୁକ୍ତାଦାମଛଳେ
ଶୋଭନ୍ତୁ ସମ୍ବାଦ ଅଛି ରେ

ସୁନ୍ଦର !

ଗୌରୀ ଗୁମ୍ଫ - ଶିଖ ଗୁଡ଼ି ରେ

ଗୌରୀପତି ଶିର ତୋବଷ - ବିଭବ
ସମ୍ବାଦଲେ ଶ୍ରେଷ୍ଠ ଲୋଡ଼ି ରେ ।

୪

ଘନ - ନୀଳ - ରୁଚି ଉନ୍ମୁକ୍ତ ଚିକୁର
ଚରଣେ ଲୋଟଇ ତୋର ରେ

ଘନବଲ୍ଲୀ ସମ କଳଧୌତ ଦାମ —
ଭୂଷଣ ଅତି ସୁନ୍ଦର ରେ

ସୁନ୍ଦର !

ଘନ – ନୀଳ ବାସେ ଶୁଭ୍ର ରେ

ଘୂର୍ଣ୍ଣିତ ତରଙ୍ଗ – କୋଳେ ରମ୍ଭା ସମ
ଶୋଭୁ ଦିବ୍ୟ ଶୋଭା ବହି ରେ !

୫

ନବକୁସୁମିତ – ନନ୍ଦନ – ବଲ୍ଲରୀ –
ବସନ୍ତ – ସ୍ତବକ – ସ୍ତନା ! ରେ

ନବ ବିଳାସିନୀ ! ନବ ରସବତୀ !
ନବୀନା ! ରତି – ଚନ୍ଦ୍ରମା ! ରେ

ସୁନ୍ଦର !

ନବକେଳି ଗୃହ ଶୁଭ୍ର ରେ

ନର୍ତ୍ତନ – ନାଟ୍ୟ – ରଙ୍ଗ – ମଞ୍ଚ ତୋରଣ
ଉନ୍ମୁକ୍ତ ତୋହର ପାଇଁ ରେ ।

୬

ଚଟୁଳ ଭ୍ରମର – ବିଭ୍ରମ – ଚଞ୍ଚଳ –
ତରଳ – ତାରକ ମୋହନ ! ରେ

ଚଳ – ଖଞ୍ଜରୀଟ – ଅପାଙ୍ଗି ! ଚତୁରି !
ଚତୁ ହରିଣୀ ନୟନ ! ରେ

ସୁନ୍ଦର !

ଚନ୍ଦ୍ର ବନ୍ଧି ହୋଇ ତୋ ଚେତରେ

ଚାମୀକର ଚୂର୍ଣ୍ଣ ଚନ୍ଦ୍ରିକା – ପୂରରେ
ଗୋଲ ଗଢ଼ିଲେ କି ସତେରେ ।

୭

ସୁନ୍ଦରୀ ପିନା ତୁ ହେଳ ଉପତର
କେଳି–ମନ୍ତ୍ର ଦୀକ୍ଷା ପାଇଁ ରେ

ବିଜୁଳୀ – ମୁକୁଟ – କୋଟି – ମଣି – ଦୀପ —
ଶିଖା – ସମପ୍ରଭା ଭୁବନରେ

ସୁନ୍ଦରି !

ଛେକକ ଭୁନ ଅବତଂସ ରେ

ଶ୍ରୀପୃଥ ଘୋର କୁସୁମ ବନବାସ
ନବ ନୀଳ – କେଶପାଶ ରେ ।

୮

ଜିଗୀଷୁ ସେନାରୁ ନିର୍ଲୋକବଳପ୍ରୀ
ବର୍ଷମେଷୁ ପୁଷ୍ପବାଣରେ
ଜଗତମୋହନ ! ଧର ସମ୍ମୋହନ
କଟାକ୍ଷ ବାଣ ମୋହନ ରେ

ସୁନ୍ଦର !

ଜିନ - ଦୀକ୍ଷା ପାଇ ସତେ ରେ
ଜଳଜନୟନେ ! ଯହାର ନେଉ ରୁ
ଜୀବ ତେଣ ସଙ୍ଗେ ରତେ ରେ ।

୯

ଫୁଟୁଥାଏ ଯେବେ ମରନ୍ଦ-ଅସାର
ଚୂତ ମୁକୁଳରୁ ସଖି ରେ
ଝଙ୍କାରୁ ଥାଏ ଯେବେଳେ କଳକଣ୍ଠ
ବସି ଘଞ୍ଚ ଉଚ୍ଚ ଶାଖିରେ

ସୁନ୍ଦର !

ଫିଟିଠେ ତନ୍ମୟ ହୋଇ ରେ
ଝିଙ୍କାର ନିସ୍ୱନ ଶୁଣେଁ ତୋ ଚରଣ-
ନୂପୁର ନିକ୍ୱଣ ଧ୍ୱନି ରେ ।

୧୦

ନବ ନଳିନୀ ରୁ ପ୍ରେମ – ପଦ୍ମାକରେ
ତରଣି ବାଞ୍ଛା – ତଟିନୀରେ

ନୀରଦ – ବିମୁକ୍ତ – ଚନ୍ଦ୍ରମା – କୌମାର –
ହର – ନବ – କୈରବିଣୀ ରେ

ସୁନ୍ଦରି !

ନବ – ଯୌବନ – ମୋହନା ! ରେ

ନବ – ପ୍ରିୟ – ସହକାର – ପ୍ରାଂଶୁଅଙ୍ଗେ
ନବମାଳିକା ରୁ ସିନା ରେ ।

୧୧

ଝଙ୍କାର ଗୁଞ୍ଜୁଛି କନ୍ଦର୍ପ – ଧନ୍ୱୀର
ସ୍ତନ – ଶୈଳ ଦୁର୍ଗୁଁ ସଖି ! ରେ

ଝଲ ପଡ଼ିଛି ରେ ମନ୍ଦାଦମୃ – ଦମୃ
ଚଞ୍ଚୁରି ! ମୃଗଶାବାକ୍ଷି ! ରେ

ସୁନ୍ଦରି !

ଝଙ୍କି – ବଙ୍କୁର ବକ୍ଷୋଜ ରେ

ଝଲ ଝଲ ସତେ କମ୍ପ୍ର ସାଧ୍ୱସେ
ମନ୍ଦାନିଳେ ଶ୍ୱେତାମ୍ଭୋଜ ରେ ।

୧୨

ତାରଦେଉ ଯେବେ ଖେଳା - ଖଞ୍ଜରୀଟ -
ଲୋଚନ ନୈନ ନଗ୍ଛରେ

ଠଷ୍ଠ ଦେଉଥାଏ ପଙ୍କେରୁହ - ମର୍ଣ୍ଣି
- ମରନ୍ଦ ପାନ - ଭ୍ରଣପ୍ରୀ ଭେ,

ସୁନ୍ଦରି !

ଟିକେଉ ପଢ଼ଇ ଅଛିରେ

ଠିକ - ଠ - ବର୍ତ୍ତୁଳ - ପୌର୍ଣ୍ଣମାସୀ ଇନ୍ଦୁ
ବଦନ - ପଙ୍କଜ ମୁଖି ! ରେ ।

୧୩

ତାକଇ ଯେବାଳେ ବର୍ଣ୍ଣ - ମନୋରମା -
ବୈଭବ - ଉଷା ସୁନ୍ଦରୀ ଦେ

ଉତ୍ତିମ ବଜାଇ କୁମ୍ଭାଟୁଆ ଖଗ
କୁକ୍କୁଟେ ନିନାଦ - ଭେରୀ ରେ

ସୁନ୍ଦର !

ଉନ୍ନତ ଶୃଙ୍ଗ ମଧମା ! ରେ

ଡରୁଥାଏ ମୁହିଁ ତୋ ବକ୍ଷେଦ ଝାପି
ରମଣୀ- ବର୍ଣ୍ଣ - ସୁଷମା ! ରେ ।

୧୪

ତଳ ପଡ଼ିଅଛୁ ଲଲିତ କୌମୁଦୀ
ସୁଧାଂଶୁ - ମୁଖ ମଣ୍ଡଳେ ରେ
ତୁମ୍ଭରି ମମ - ମାନସ - ଚକୋର
ସଂକଳ୍ପ ଚୁମ୍ବନ ଛଳେ ରେ

ସୁନ୍ଦର !

ଟଳ ଟଳ ରୂପ ଦେଖିରେ ,

ତରଙ୍ଗେ ଜ୍ୟୋତ୍ସ୍ନା ପୂରେ ବହିଲୁ କିମନେ
ଆବେଶ - ହୃଦ - ପାରକ୍ଷି ! ରେ ।

୧୫

ଅମର୍ତ୍ତ୍ୟ ସୁନ୍ଦରୀ ହେଲେ ତୁଚ୍ଛକରୁ
ଅମୃତ - ଫେନ - ଗୌରାଙ୍ଗି ! ରେ
ଅବଗୁଣ୍ଠନ ତୁମ୍ଭ ପ୍ରେମାକାଶେ ଗୋଛ !
କଚ - ନୀଳଘନ - ସଙ୍ଗି ରେ

ସୁନ୍ଦର !

ଅଙ୍ଗନା ବୈଦଗ୍ଧ୍ୟ ଖଣି ! ରେ

ଅବତାର ତୁମ୍ଭ ମର୍ତ୍ତ୍ୟେ ଦ୍ୱାପରର
ମୋହିନୀ ସୁନ୍ଦରୀ - ମଣି ରେ ।

୧୬

ଭୁଲିନା ତୋହର କାହିଁ ଅରେ ଧନ,
ଭୁଲନା ତୋହର ତୁହି ରେ

ତୀର୍ଥ -ସାରସ୍ୱତ ତୁ ହିନା ମୋହର
ବାଣୀ – ଅରାଧନା ପାଇଁ ରେ

ସୁନ୍ଦର !

ତରୁଣୀ ହୃଦୟ – ସାର ! ରେ

ତୁହି ସିନା ମୋର ହୃଦୟ-ତନ୍ତ୍ରୀର
ମଧୁର ବୀଣା – ଝଙ୍କାର ରେ ।

୧୭

ଥରୁଥାଏ ଯେବେ ଦାମିନୀ – ଝଟକ
ନୀଳ- ନୀରଧର - କୋଳେ ରେ

ଥରୁଥାଏ ଯେବେ ସହକାର ଦେହେ
ମା'ଧବୀ ଲତା ଅଞ୍ଚଳେ ରେ

ସୁନ୍ଦରି !

ଅନୁଭବ କେଢ଼ି ମନ୍ଦୁରେ

ଥରୁଥାଉ ଭବ - ବିଳାସିନ ! ସେହି
ପ୍ରକୃତି - ରୂପ ଲୋକନୁ ରେ ।

୧୮

ଦର ବିକଶିତ କୋକନଦ ସ୍ମିତ —
ସଙ୍ଗେ ସୁଧାକର ଶିଖୀରେ

ଦରହାସ ତୋର ପ୍ରବାଳ ଅଧରେ
ପ୍ରକାଶେ ଦ୍ରବ୍ୟ ଗୃଭୁଖୀ ରେ

ସୁନ୍ଦରି !

ଦୟିତ – ପ୍ରେମ – କୁଣ୍ଡଳ ! ରେ

ବିଖଣ୍ଡ କରୁଛୁ ସତେ କାମରୂପ
ଭ୍ରୂଲତା ନର୍ତ୍ତନ ଛଳରେ ।

୧୯

ଧରିବାକୁ ଯିନା ଧୃତ , ଧୀରମଣି !
ବାନ୍ଧରୁ ବେଣୀ ଯତନେ ରେ

ଧରିବୁ ରେ କଣ୍ଠେ ଧମ୍ମିଲ୍ଲଶୋଭିନ !
ପ୍ରାଣେଶ – ହୃଦ ଗୋପନେ ରେ

ସୁନ୍ଦରି !

ଧୃତ – ଧର ଯିବ ହେଲ ରେ

ଧରିଛି ଯେଣୁ ରେ ଦମ୍ଭୋଳି – ଶକତି
ତୋ ବକ୍ଷେ କମଳ କଳୀ ରେ ।

୨୦

ନବୋଦ୍ଗତ ବାଳ - ଭାନୁ - ଭାନୁ ହରେ
ସୀମନ୍ତେ ସିନ୍ଦୂର ବିନ୍ଦୁରେ

ନୀଳ ନଭେ ଊଷା - ପାଟଳେ ସ୍ଫୁରିତ
ଅବା ପୌର୍ଣ୍ଣମାସୀ ଇନ୍ଦୁରେ

ସୁନ୍ଦର !

ନଗ୍ଧଇ ସୁଗ୍ଧର ଭୁଗ୍ଧରେ

ନବ - ପ୍ରେମମତ୍ତ - ଦମ୍ପତି - ମାନସ -
ରଥାଙ୍ଗ - ବିଭ୍ରମ କରୁରେ ।

୨୧

ପାରିଜାତ ସ୍ତବେ ରଞ୍ଜିଲଣି ଲଜ୍ଜ-
ପାଟଳ ଗଣ୍ଡେ ତୋହର ରେ

ପଲ୍ଲବଲ କରେ ନବସ୍ତବେ ପ୍ରିୟ-
ପ୍ରଣୟ - ଆଶା - ବଲ୍ଲରୀ ରେ

ସୁନ୍ଦର !

ପ୍ରମତ୍ତ-କେଳି ପ୍ରକାଶ ! ରେ

ପ୍ରଣୟ - ସାଗର - ଯାଯାବିକ - ଆଶା -
କୌବେରୀ - ତଳକ ସିନାରେ ।

୨୨

ଫଣିପତି – ଫଣା – ମହାର୍ଘ ମଣିରୁ
ରୁଚିରା ମହାର୍ଘତର ରେ
ଫୁଲ୍ଲ ଦଶିଖର ପଞ୍ଚଶରେତର
ତ୍ରିଭୁବନ ଚୈତ୍ର ନଗର ରେ

ସୁନ୍ଦରି !

ଫୁଲ୍ଲାରବିନ୍ଦ ବଦନେ ! ରେ
ଫାଟି ଯାଉଅଛୁ ବକ୍ଷେ ମୁକ୍ତାଦାମ
କନ୍ଦର୍ପ – ଦର୍ପ – ଦହନେ ରେ ।

୨୩

ବାସନ୍ତୀ – ବ୍ରତତୀ – ନବ – କିଶଲୟ –
ରାଗ – ରଞ୍ଜିତ – ଅଧରରେ
ବାସନ୍ତୀ – ବେଷ୍ଟିତ – ସହକାର – ସଙ୍ଗି
– କଳକଣ୍ଠ – କଳଗିରେ ! ରେ

ସୁନ୍ଦରି !

ବନ୍ଧୂକ – ଅଧରେ ! ବନ୍ଧୁ ! ରେ
ବଳାହକ କେଶି ! ତୋମୁଖ ଚନ୍ଦ୍ରମା
ଉଲ୍ଲାସେ ମୋ ପ୍ରାଣସିନ୍ଧୁରେ ।

୬୪

ଭୃମରୀ ସିନାଇ ମୋ ହୃଦ- ସାରସ—
ମକରନ୍ଦ ପାନ ପାଇଁ ରେ
ଭ୍ରୂଭଙ୍ଗି, ଅପାଙ୍ଗ- ଛଳେ କାମଶ୍ଚେପ
ମିଲନ୍ଦ ମୌର୍ବୀ ଚଢ଼ାଇ ରେ

ସୁନ୍ଦର !

[illegible] ଭଙ୍ଗିମା ଦେଖାଅ ରେ

ଭିନ୍ନ କରୁଥିବ, [illegible] ନେତ୍ରବାଣେ
ଅଞ୍ଜନ - ବିଷ ବସାଅ ରେ ।

ମଧୁକରୀ ଗୁଞ୍ଜି ମୋ ମାନସ-ମଧୁ-
ମଧୁର ଚୁମ୍ବନ ପାଇଁ ରେ
ମାନସମୋହନ ! ମୋହନେଉ ମନ
କବରୀ-ବନ୍ଧ ନଗ୍ନଇ ରେ

ସୁନ୍ଦରୀ !

ମନେ ନାଚୁଁଛ ମଣ୍ଡନ ରେ ,

ମଣ୍ଡିଥାଉ ଯାହା ପାରିଜାତ ରଙ୍ଗେ
କୁନ୍ତଳେ ସଜ ସୁମନ ରେ ।

୨୦

ଯୌବନ - ପୀୟୂଷ — ଜଳେ - ସ୍ନାତ - ସଦ୍ୟ
-ବିକଶିତ କମଳିନୀ ! ରେ

ଯୋଷାମଣି ! ତୋର ଶୋଭାମୟ ତନୁ
ଭୂଷମା ଦେବା-ବାଣୀ ରେ,

ସୁନ୍ଦରୀ !

ଯୋଗୀନ୍ଦ୍ର-ମନ-ମୋହିନୀ ରେ !

ଯେଣୁରେ ସଂଯମ-ସେତୁ ବିଭଞ୍ଜିନୀ
ସ୍ମିତ-ସୁଧା-ତରଙ୍ଗିଣୀ ରେ !

୨୭

ରମଣ-ମାନସ-ସରସୀ - ବିଳାସିନୀ
ମଦାଳସୀ ରାଜହଂସି ରେ !

ରୂପସିନ୍ଧୁ-ଲୀଳା-ବିମ୍ବିତ - କୌମୁଦୀ
ହାସିନି ! ମଞ୍ଜୁଳଦର୍ଶି ! ରେ

ସୁନ୍ଦରି !

ରସମୟୀ ଭୁବି ସେନାରେ

ରତି-ରଙ୍ଗ - ରଭସତ - ସିମନ୍ତିନୀ
ଅଗ୍ରଣୀ - ନାଶା - ଭୂଷଣାରେ ।

୬୮

ଲୋକଚକ୍ଷୁ ବହ୍ନି- ଧର୍ମାତ୍ମୀ ମିହିର
ବହ୍ନିର ବ୍ୟୋମ କୁଙ୍କୁମେ ରେ
ଲଲାଟେ ଅଙ୍ଗି ରେ ! ଡୁବନ୍ତି ଯେବେଳେ
ନଭ - ସାଗର ସଙ୍ଗମେ ରେ

ସୁନ୍ଦରି !

ଲୀଳା - ଶତଦଳ ଧରି ରେ *

ଲୀଳାବତି ! ଭଙ୍ଗି କରନ୍ତୁ ସେବେଳେ
ଦେଖାଉ ସଙ୍କେତ କିସି ରେ ।

୬୯

କାଦମ୍ବ-ବନ - କୋମଳ - ପରଶ
ସ୍ପୃଶି ଉପୁକାଏ ମନେ ରେ
ବଳଯିତ ଭୁଜେ ମୃଣାଳ ସୋଦର -
ସଂମ୍ବନ୍ଧ ମୁଖ ସ୍ତିମେ ରେ ଚୁମ୍ବନେ ।

ସୁନ୍ଦରି !

ବରାଙ୍ଗି ! ବରବର୍ଣ୍ଣିନି ! ରେ

---

* ପ୍ରେମ୍ପ୍ରତ ସନ୍ଧ୍ୟାସଙ୍କେତ ପଦ୍ମ ମୁଦ୍ରଣ ଦ୍ୱାରା
ପ୍ରକାଶ କରାଯାଏ ।

ବେତସୀ - ମେଦୁର - ନବ୍ରୁଢ଼ ନିକୁଞ୍ଜ -
ବିହାର - ସହଚାରିଣୀ ରେ ।

୩୦

ଶୈବଳିନୀ ସିନା ଭୁବି ରେ ସଙ୍ଗିନୀ !
ଯାଗ୍ବାର ସିନା ମୂର୍ତ୍ତି ରେ

ଶୁଭ୍ରାଂଶୁ ପୁଣିରେ ପ୍ରେମାକାଶେ ତୋର
କୈରବିଣୀ ସିନା ଭୁବି ରେ

ସୁନ୍ଦରି !

ଶୁଭଙ୍ଗି ! ମୋ ପ୍ରାଣସଖି ! ରେ

ଶାଶ୍ୱତ - ସମୂଳ - ସୁଧା-ପୂର ଭୁବି
ହର - ପର - ଦଗ୍ଧ ମୂର୍ତ୍ତି ରେ ।

୩୧

ଷଟ୍ପଦ - ଶିଞ୍ଜିନୀ କୁସୁମ କୋଦଣ୍ଡ
ଲୋଡ଼ୁନାହିଁ ଅଉ ମାର ରେ

* ଷଡ଼ଙ୍ଘ୍ରିଶେଖର - ଷଡ଼୍ଗୁଣ- ସମ୍ଭାର -
ପଞ୍ଚଶର - ଷଷ୍ଠ ଶର ! ରେ

---

* ଛଅ ଚକ୍ଷୁରୁ ଉତ୍ତର ବିଷୟ ।

ସୁନ୍ଦରି !

ଷଟ୍‌ପଦ ମୂର୍ତ୍ତି କୁନ୍ତଳା ! ରେ

ଷଡାସ୍ୟ - ମୋଦର - କୁମ୍ଭ - କିରୀ ହର -
ଉରଜା ! ପ୍ରୀତ ବହୁଳା ! ରେ ।

୩୨

ସତେରେ ସୁନ୍ଦରି ! ହର ହୁତାଶନୁଁ
କରିବ ପସ୍ମ ଅତନୁ ରେ

ଥାଙ୍କଲେଣି ନେଣ୍ଣୁ ଶାଙ୍କର ସମ୍ଭ୍ରାନ୍ତ
ସୁରଙ୍ଗେ ତୋହର ତନୁ ରେ

ସୁନ୍ଦରି !

ସଞ୍ଚରି ଯୌବନ - ବନ ରେ

ସର୍ବାଙ୍ଗେଷ କରି ଗଢ଼ିଲାକି ? ମାର -
ଦୁର୍ଲଙ୍ଘ୍ୟ - ଦୁର୍ଗ - ସଦନ ରେ ।

୩୩

ସ୍ୱର୍ଣ୍ଣପୁରୀ ଦେଖି ସ୍ୱମଙ୍କୁ ଛାଡ଼ି ,
ହର - ବହ୍ନି - ବୀର୍ଯ୍ୟ ଜିଣି ରେ

ହିମାଦ୍ରି - ଶିଖରୁ ଓହ୍ଲାଇଲେ ଅବା

ହିମାଳୀ ଝଙ୍କାରିଣୀ ରେ

ସୁନ୍ଦର !

ହିମାଂଶୁ - ରଞ୍ଜିତ-ଜ୍ୟୋତିଷ୍ମାନ ! ରେ

ହର୍ଷିତ - ପ୍ରମତ୍ତା - ଶ୍ୟାମ - ସୁହାଗିନୀ,
ଅଭିରାମ - ବିଳାସିନୀ ରେ ।

୩୪

ସ୍ୱାଭିମାନ ଧର୍ଯ୍ୟ - ଢାଲ ତୋଳିଅଛୁ
କଟାକ୍ଷ ଦମ୍ଭୋଳି ହାଣି ରେ

କ୍ଷଣପ୍ରଭା ତୋର ! ସକଳ ବାଞ୍ଛିତା
ମମ ଚାରୁହାସିନୀ ରେ

ସୁନ୍ଦର !

କ୍ଷଣଦା ନନ୍ଦଦାୟିନୀ ! ରେ

କ୍ଷମାଳୀର ମୁକ୍ତି ! ଅମରକାଂକ୍ଷିଣି !
ଭୁସିମା ଦେବ ଭୋଗିନୀ ରେ ।

—— ⁘ ——

ସମାପ୍ତ

# ଉତ୍ସର୍ଗପତ୍ର ।

— ❊:○:❊ —

ପରମସ୍ନେହ ଭାଜନ,
ଶ୍ରୀଲଶ୍ରୀଯୁକ୍ତ ଶ୍ରୀଶ୍ରୀ ଉଦୟ ପ୍ରତାପସିଂହ ଦେଓ
କାଶୀପୁର-ଅଧୀଶ୍ୱର ସକଳହୃଦୟେଷୁ ।

ପ୍ରିୟବର କାଶୀପୁର ନରେଶ !
ଆସିଅଛି ସୁହୃଦ୍‌ବର ! ଘେନ ଏ ସ୍ତବକ
ଅର୍ପିବାକୁ ତବପାଶେ, ସୁଜ୍ଞାନ-ପ୍ରଣୟି !
ବହୁ ବର୍ଷ ତଳେ ଫୁଟିଥିଲା କୁସୁମ
ମୋ ହୃଦକାନନେ ; ଥିଲା ଉତ୍କଣ୍ଠିତେ ପଶ୍ରଏ ।
ସହସା ମୋ ନେତ୍ର-ପଥ-ଅନୁଗାମୀ ହେଉଁ,
ସଯତ୍ନେ ଗୋଟାଇ ତାକୁ ସୁରମ୍ୟ ସ୍ତବକେ
ରଚିଲି, ଆନନ୍ଦେ ତବ ପାଶେ ଭେଟିବାକୁ ।
ତ୍ରିକୁଟର ଚନ୍ଦ୍ରହାସ୍ୟ, ସୁମନ ସଙ୍ଗରେ
ଯଥା ପ୍ରକାଶଇ ନିତ୍ୟ ବସନ୍ତ ବିଭବ,
ଲୁଳିତ ଯୌବନ କାନ୍ତ ହୋଇ ଉର୍ଦ୍ଧ୍ୱସ୍ଥଳ
ବିଶ୍ୱପର ବନ୍ଧୁ ! ତବ ଲଳିତ ଆନନେ ।
ଏପୁଷ୍ପ ସୌରଭ ଯୋଗ୍ୟ ମଣଇ ତୁମ୍ଭଙ୍କୁ,
ବପୁସର ଅନୁରୂପ ଯେଣୁ ଏ ସୌରଭ ।

କବିତା-କୁସୁମ-ଦାମ ତବ କଣ୍ଠାଶ୍ରିତ,
ନରନାଥ ! ଯତ୍ନେ ଏହୁ ଅର୍ପିତ ସ୍ତବକ
ମିଶାଇ ଝଙ୍କିବ ଯେବେ ମଧ୍ୟମଣି ରୂପେ
ସାର୍ଥକ ହୋଇବ ମୋର ଏଧେର ପ୍ରୟାସ ।

ଇତି। ୨୭।୭।୧୯୦୯ ଇଃ

ରଚକ।

# ପ୍ରେମସ୍ତବକ ।

୧ମ ସ୍ତବକ

( ଏକାଦନ ରାଧିକାଙ୍କ ପ୍ରିୟସଖୀ ଲଳିତା ଯମୁନା-ତଟସ୍ଥ ବୃନ୍ଦାବନର କଦମ୍ବ – ମୂଳରେ ଦଣ୍ଡାୟମାନ ହୋଇ ଚତୁର୍ଦ୍ଦିଗ ନିରୀକ୍ଷଣ ପୂର୍ବକ ପ୍ରକୃତଶୋଭା ଓ ରାଧାକୃଷ୍ଣଙ୍କ ପ୍ରଣୟରଚନା କରୁ କରୁ, ବାହ୍ୟଲତା ହୋଇ, ଶ୍ରୀକୃଷ୍ଣଙ୍କ ଅଦୃଷ୍ଟ ବେଣୁପ୍ରତି ସ୍ୱଗତ ଅଭିମତ ପ୍ରକାଶ କରୁଅଛି )

ଲଳିତା । — ( ସ୍ୱଗତ )

ଝିଞ୍ଜିଟି – ଏକତାଳୀ ।

ବାଜ ରେ ବେଣୁ ଅଙ୍ଗ ଡ୍ରଙ୍ଗରେ
ବ୍ରଜେଶ୍ୱରୀ ମନ – ମୋହନେ ।
ଗୋପ ର ରଞ୍ଜନ ଗୋପୀପ୍ରାଣଧନ—
ପ୍ରିୟ–କେଳି – କୁଞ୍ଜ - ସଦନେ ॥ ଧ୍ରୁ — ପ
ଯମୁନା – ତଟିନୀ – ତଟ କାନନେ
ପିକ, ପିକ-ବଧୂ – ମୃଦୁ କୂଜନେ
ମିଶ୍ର ହେବ ଧ୍ୱନ ବାସନ୍ତୀ - ଲତିକା – ( କ )
–ରସିଅ ମଧୁପ ଗୁଞ୍ଜନେ ॥ ୧ ॥
ନଶାଳି – କାକଲି ସଙ୍ଗେ ସୁରଙ୍ଗେ
ତମାଳ-ଶ୍ୟାମଳ– ନଦୀ – ତରଙ୍ଗେ

( କ ) ମାଧବୀ ଆଦି ।

ନିଶୁ ସେହ୍ବ ଧ୍ୱନ   ଶାନ୍ତ – ସୁହାସିନୀ

ମଧୁର ନୂପୁର ଝଙ୍କୃଣେ ॥ ୨ ॥
ସଖୀ ମେଳେ ପ୍ରିୟ ଗୀତ ଗାୟନେ
ତହିଁ ସଙ୍ଗେ ପୁଣି ସୁତାନ ମାନେ

ନିଶୁ ସେହ୍ବ ଧ୍ୱନ   ସେ ମନ ମୋହିନୀ

ଭାବ ଗମ୍ଭୀ ବୀଣା – ମୂର୍ଚ୍ଛନେ ॥ ୩ ॥
ମଳୟ ମାରୁତ ସଙ୍ଗେ ଗଗନେ
ମିଶି ସୁଧା ଢାଳୁ ବ୍ରଜ – ପ୍ରାଙ୍ଗଣେ

ମିଶୁ ସେହ୍ବ ଧ୍ୱନ   ଭାବ–ଉଲାସିନୀ

ସବ ଗୋପନାରୀ–ଜୀବନେ ॥ ୪ ॥

—*:O:*—

୨ୟ ସ୍ତବକ ।

( ବୃଷଭାନୁ–ନନ୍ଦନୀ ରାଧିକା ଋତୁସ୍ନାନ ଅନ୍ତରେ ସମୟୋଚିତ ବେଶରେ ସଖୀମାନଙ୍କ ସହ ଯମୁନା କୂଳରେ ଉଭା ହୋଇଥିବା ସମୟେ , ଲତାକୁଞ୍ଜ ଅନ୍ତରାଳରେ ଶ୍ରୀକୃଷ୍ଣ ରାଧିକାଙ୍କ ରୂପ ଓ ନବ ଭଙ୍ଗାଳକ ବେଶ ଗୁପ୍ତ ଭାବେ ଅବଲୋକନ କରି ପ୍ରେମ ବିହ୍ୱଳରେ ସ୍ୱଗତ ଭାବନା କରୁଅଛନ୍ତି )

ଶ୍ରୀକୃଷ୍ଣ । — ( ସ୍ୱଗତ )

ଝିଞ୍ଜିଟ – ଏକତାଳୀ ।

ନବ ବେଶ ଧରି ନବୀନା ସୁନ୍ଦରୀ
ଅଛି ନବ ଭାବ ମେଳରେ ;

ସୁକେଶୀ-ସୁକେଶ- ସୁଷମା ଜଣଉଁ
କାମର୍ବେ କମ୍ପନ- ଖେଳରେ ॥ ଧ୍ରୁ-ପ
କଳାପୀ - କଳାପ - ଚାରୁରଞ୍ଜ
ଚୁମ୍ବି ଚରଣକୁ ଅତିସୁନ୍ଦର
ଧର୍ବିମାନ ସଙ୍ଗେ ଖେଳେ କି ସୁରଙ୍ଗେ
ତମ - ସିନ୍ଧୁ - ବୀଚିମାଳ ରେ ॥ ୧ ॥
ସୁଭଗା - ସୀମନ୍ତ - ଶୋଭି - ସମ୍ଭାର
ସିନ୍ଦୂର - ବନ୍ଧୁର ସୁନ୍ଦରତର
ହୁଦ - ଧୃତ - ଜଣା ସେ କେଳିପ୍ରବୀଣା -
ଅନହ୍ନି - ମଧୁରୀ ବେଳରେ ॥ ୨ ॥
ଭ୍ରମରାଳୀ - ଜଣା - କୁଞ୍ଚିକୁନ୍ତଳ
ମଳୟ ମାରୁତେ ହେଉଁ ଚଞ୍ଚଳ
ମନେହୁଏ ପ୍ରଭେ ମୟୂର କି ମତେ
ମୁଖତାମରସ ଲୋଳରେ ॥ ୩ ॥
ଧରି ଅଛୁ ବେଶ କେଡ଼େ ମୋହନ
ଲୋଲାପାଙ୍ଗକୁ ସେ ଲୀଳାଖଞ୍ଜନ
ଭ୍ରୂଲତା-ଭଙ୍ଗିମା ସଜାଉଛୁ ବାମା
ମୋହନ-ମନ୍ତ୍ର ଛଳରେ ॥ ୪ ॥
ପ୍ରିୟ ଠାରୁ ଧନୀ ପ୍ରୀତିପାରଣା
ଲଭିବାକୁ କି ଯେ ଉତ୍ସୁକ ମନା

ବନ୍ଧୁ - ପ୍ରୀତିଶୀଳା  ସେ ନବ ଛଇଳା
ମତ୍ତ ଅଛି ପ୍ରେମ ଖେଳରେ ॥ ୫ ॥

—*:O:*—

୬ ଷ୍ଠ ସ୍ତବକ ।

( କୃଷ୍ଣ - ପ୍ରେମଲାଳସୀ ଗୋପୀଗଣ ଏକ ସଙ୍ଗରେ ଯମୁନାକୁ ଯାଉଁ ଯାଉଁ ପଥମଧ୍ୟରେ ଏକଭାବରେ ପରସ୍ପର ମନୋଗତ ଅଭିଳାଷ ପ୍ରକାଶ କରୁଅଛନ୍ତି )

ଝିଞ୍ଜିଟି - ଏକତାଳୀ ।

ଆସ ଲୋ ସଖି ! ଯମୁନାକୁ ଯିବା
ଦେଖିବା ମୋହନ - ମୋହନ ;
ମୋହନର ବଂଶୀ — ସ୍ୱନେ ମିଶିଥିବ
ନୀପ ପୁଷ୍ପେ ଅଳି-ଗୁଞ୍ଜନ ( ଧ୍ରୁ — ପ )
ବନେ ଫୁଟିଥିବ ବନ - ସୁମନ
ହସିବ ରେ ସଖି ! ରସିକା - ମନ
ଲତା-କୁଞ୍ଜମଧ୍ୟୁ ଉଠୁଥିବ ତାନ
ପୁଂସ୍କୋକିଳ ମଧୁ କୂଜନ ॥ ୧ ॥
ବହୁଥିବ ଧୀରେ ମନ୍ଦ ପବନ
ଯମୁନାର ଧୀର-କଲ--ନିଃସ୍ୱନ
ହରୁଥିବ ମନ  ତୋଷିବ ଶ୍ରବଣ
ଅନୁକୂଳ ହେବେ ମଦନ ॥ ୨ ॥
ରସ-ସିନ୍ଧୁ ସେହି ଆମ୍ଭ ଜୀବନ
ପୁଷ୍ପେ ମାଳା ଗୁନ୍ଥି ତାଙ୍କୁ ବରଣ

କହିବା ଲୋ ସଖି ! ସେହ ପ୍ରେମ ସାକ୍ଷୀ
  କରିବେ ଅଧର ଚୁମ୍ବନ ॥ ୩ ॥
ହୃଦେଇ ଚୋଷିବା, ଅମୃତସ୍ରଣ
  ସେତ, ଜୀବଧବ ପୁଣି ଶରଣ
ସୁମନ ଗୁନ୍ଥିବା କଣ୍ଠେ ମାଳା ଦେବା
  ଗୋପ-ନାରୀ-ବ୍ରଜ-ରମଣ (*) ॥ ୪ ॥
କବରୀ ବାନ୍ଧିବା କରି ଯତନ
  ଖଞ୍ଜିବା ନଅଲୀ କୁସୁମ ମାନ
ହୋଇଣ ସ୍ୱବେଶ ଯିବା ତାଙ୍କପାଶ
  ଯେଣୁ ସେ ରସିକମଣ୍ଡନ ॥ ୫ ॥

—o—

୪ ର୍ଥ ସ୍ତବକ

( ପୂର୍ବସଙ୍କେତ ଅନୁସାରେ ଶ୍ରୀକୃଷ୍ଣ କଦମ୍ବ ମୂଳରେ ରାଧିକାଙ୍କର ଅପେକ୍ଷାରେ ଥିଲେ । ଲଳିତା ଓ ବିଶାଖା ରାଧିକାଙ୍କୁ ସଙ୍ଗରେ ଘେନି ଯମୁନାସ୍ନାନଛଳରେ କାଳିନ୍ଦୀ-ତଟରେ ଉପସ୍ଥିତ ହେବା ସମୟେ ଅନ୍ୟାନ୍ୟ ନଗର-ବାସିନୀଗଣ ଜଳନେବା ନିମନ୍ତେ ଅତର୍କିତଭାବରେ ହଠାତ୍ ସେସ୍ଥଳରେ ଉପସ୍ଥିତ ହେଲେ । ତଦ୍ଦୃଷ୍ଟେ ଅସୁବିଧା ବୋଧରେ ଶ୍ରୀକୃଷ୍ଣ ଫେରିଯିବାର ଉଦ୍ଯୋଗ କରନ୍ତେ ଲଳିତା ଜାଣିପାରି ନଗରବାସିନୀଙ୍କ ଯିବାପର୍ଯ୍ୟନ୍ତ କିଛିକ୍ଷଣ ଲତାକୁଞ୍ଜ ମଧ୍ୟରେ ଗୁପ୍ତରୂପେ ଅପେକ୍ଷା କରିବା-

* ଗୋପସ୍ତ୍ରୀ ସକଳର ପ୍ରିୟ ।

ପାଇଁ କଥାସଙ୍କେତ ଭାବରେ ଜଣାଉ ଅଛି ।

୧ ମ ଭାବାର୍ଥ ଭ୍ରମର-ପକ୍ଷରେ ଓ ୨ ୟ ଭାବାର୍ଥ ଶ୍ରୀକୃଷ୍ଣଙ୍କ ପକ୍ଷରେ । ଅର୍ଥାତ୍ ଲଳିତା ଏପରି କୌଶଳରେ ମନୋଗତ ଭାବ ପ୍ରକାଶ କଲେ ଯେ , ନଗରବାସିନୀମାନେ ଭ୍ରମରକୁ ଲକ୍ଷକରି କହୁଥିବା ଏବଂ କୃଷ୍ଣ , ସଖୀବିଶାଖା ଓ ରାଧିକା ଏମାନେ କୃଷ୍ଣଙ୍କୁ କହୁଥିବାର ବୋଧକଲେ )

ଲଳିତା । —

ଝିଞ୍ଜିଟି - ଏକତାଳୀ ।

ଗୁଞ୍ଜରେ ଅଳି ! କୁଞ୍ଜ-ସଦନେ
ବଞ୍ଜୁଳ - ମଞ୍ଜରୀ ମେଳ ରେ ,
ଅଞ୍ଜନ-ଖଞ୍ଜନ - ଲୋଚନ - ନର୍ତ୍ତନ -
ଗଞ୍ଜନ ପ୍ରକାଶି ଖେଳରେ ( ଧ୍ରୁ - ପ )
ବିଠବ୍ରାଜ ଛୁଇଁ ପଙ୍କଜ ବନେ
ଭାଙ୍ଗୁ କୌମାର ତୁ ସଜ ସୁମନେ
ତୋତେ ଆନୁସରି ପୁଷ୍ପ ସୁକୁମାରୀ
ହସୁଥାଏ ବୃନ୍ତ- କୋଳରେ ॥ ୧ ॥
ଚମକ-ଚନ୍ଦ୍ରକ ପୁଚ୍ଛକୁ ଟେକି
ତୋ ମଧୁ ଝଙ୍କାରେ ନାଚୁଅ କେକୀ
କେତେ ଭଙ୍ଗୀକରି ନାଚୁଥାଏ ଫେର
ବ୍ରତତୀ ର ଅନ୍ତରାଳରେ ॥ ୨ ॥
ସୁମନାକୁ ଛୁଇଁ ଘ୍ରାଣୁ ବହନେ

ଝ ମନ୍ତ୍ର ପଢ଼ାଉ ମୃଦୁ ଗୁଞ୍ଜନେ
ସେ ମନ୍ତ୍ର ମୋହିତା ଅନ୍ୟ ପୁଷ୍ପେ ପୁଣି
ଶିଖାଏ ମଳୟାଞ୍ଚଳରେ ॥ ୩ ॥
ଯାବତ ସୁମନ ବୃନ୍ଦ ହକଣି
ହସୁଥିବ ତୋତେ ଦେଖି ସୁରଭି
ତୋ ପ୍ରେମ-ସରଣି ଦେଖାଇବ ପୁଣି
ହାର୍ଦ୍ଦିକ ପରିମଳ ରେ ॥ ୪ ॥
ତନ୍ତ୍ରୀସଙ୍ଗେ ମିଶି ତୋର ଗୁଞ୍ଜନ
ମୋହିନେବ ଯେବେ ଭାରତୀ-ମନ
ସୁନେତ୍ରା-ଗୃହିଣି ଉପମାନ ଘେନ
କରୁଥିବୁ ସଦା ଖେଳ ରେ ॥ ୫ ॥

—*:୦:*—

୪ ଥ ସ୍ତବକ ।

( ସୁବେଶଭୂଷିତା ରାଧିକାଙ୍କ ଅନୁମତ୍ୟନୁସାରେ ଲଳିତା ନିର୍ଦ୍ଦିଷ୍ଟ ସମୟରେ ଶ୍ରୀକୃଷ୍ଣଙ୍କୁ ଆଣିବା ନିମନ୍ତେ ଯାଇଥିଲା । ଶ୍ରୀକୃଷ୍ଣଙ୍କ ଥିବାସ୍ଥଳରେ ଯାଇ ଦେଖିଲା ଯେ ଶ୍ରୀକୃଷ୍ଣ ଗାଲ୍ଲ ପସ୍ୱପୂର୍ଣ ଢଉପଦ୍ମ ବ୍ୟକ୍ତିଙ୍କ ମଧ୍ୟରେ ବସି କଥୋପକଥନ କରୁଅଛନ୍ତି । ଲଳିତା ନିଜକାର୍ଯ୍ୟ ସାଧନର ବାଧାଦେଖି କୃଷ୍ଣଙ୍କ ହୃଦୟ ଛିନ୍ନ କରିବା-ପାଇଁ କିଛିଦୂରରେ ଗମନ ର ଛଳକରି ରାଧିକାଙ୍କ ତତ୍କାଳୀନ ବେଶ ବର୍ଣ୍ଣନା ପୂର୍ବକ ଗୋଟିଏ ଗୀତ-ଗାନ କରୁଅଛି ) ।

ଝିଞ୍ଜିଟି — ଏକତାଳୀ ।

ପ୍ରଣୟ-ଲାଲସା ପୋଷି ମନେ ଯୋଷା
ସୁଶୋଭିତ ନବ ବେଶରେ ;
ଅଙ୍ଗ ପ୍ରିୟ୍ପା ଛନ୍ଦେ ମହରଷ ମନେ
ତୋଷିବାକୁ ହୃଦେଶ୍ୱରେ ( ଧ୍ରୁ—ପ )
ତରଙ୍ଗ ଭଙ୍ଗିରେ ଚୂର୍ଣ୍ଣ କୁନ୍ତଳେ
ସଜାଡ଼ିଛୁ, ବାମା ଅଲକ-ଭାଲେ
ଚନ୍ଦ୍ରମୁଖୀଁ ଅବା ଉଜ୍ଜ୍ୱଳ ଲହରେ
ଚନ୍ଦ୍ରିକା ସୁନୀଳାକାଶରେ ॥ ୧ ॥
ଗଣ୍ଡ ବିମଣ୍ଡିତ ଚକୁଳେ ଗୋରୀ
ସଯତ୍ନେ ସଜାଡ଼ି ମକରୀ ଶିରୀ
କର୍ଣ୍ଣ-ଅବତଂସ -ସଂକାଶ - ସଂଶିତ—
କୁଣ୍ଡଳ - ଭୂଷଣ ବେଶରେ ॥ ୨ ॥
ମୃଗମଦ-ବିନ୍ଦୁ ଶୋଭେ କପାଳେ
ଚକୋରୀ କି ଅବା ଚନ୍ଦ୍ରମା କୋଳେ
ସୁମୁଖୀ - ସୁମୁଖ - ଚନ୍ଦ୍ରମା - ଚଷକୁଁ
ତୋଷିବ କିବା ପୀୟୂଷରେ ॥ ୩ ॥
ବାମେଭରେ କେଶପାଶ ମଣ୍ଡନ
ପ୍ରସାଧନେ ସାଜିଅଛୁ ବନ୍ଧନ
ଆବେଶ - ସମ୍ଭୋଗ — ଲାଳସ - ମାନସ -
ବିହଗ-ନୀଡ଼ ବିନ୍ୟାସରେ ॥ ୪ ॥
ପ୍ରେମକେଳୀ-ଦୀକ୍ଷା-ଶ୍ରେଷ୍ଠ-ଗ୍ରନ୍ଥସ

ସୁଭଗା-ଲାବଣ୍ୟ - ଯାଦୋ ନିବାସ-
ମଧ୍ୟରେ ଉଦ୍‌ଗତ ସୁନ୍ଦର ଶାଶ୍ୱତ
କୁଚ-କଳୀ - ତାମରସ ରେ ॥ ୫ ॥
ଘନ ନୀଳ ବାସେ ତନୁ ମାଧୁରୀ
ହୃଦ୍ୟଦାମ- ଶୋଭା ବକ୍ଷ ଚାତୁରୀ
ପ୍ରକାଶିବ ଅବା ଚଞ୍ଚଳ ଚମକ
ପ୍ରାଣେଶ ହୃଦୟାକାଶରେ ॥ ୬ ॥

— ❊:O:❊ —

ସମାପ୍ତ ।

# ଉପହାର ।

ସ୍ୱସ୍ତି ଶ୍ରୀମାନ୍ ବୀରବିକ୍ରମ ସିଂହ ଦେବ ବର୍ମ୍ମା
ଉଦାର ହୃଦୟ
ଖଡ଼ିଆଳସ୍ଥ ଅଧୀଶ୍ୱରେଷୁ ।

ପ୍ରିୟବର !

ଶଙ୍କର ଦେବ ! ତୁମ୍ଭେ ଅବର ରସିକ
ବନ୍ଧୁ-ପ୍ରେମେ ପୂର୍ଣ୍ଣ ତବ ହୃଦୟ-ସରସୀ,
ସୁମଞ୍ଜୁଳ-ସୁକୋମଳ-କମଳ-କୁନ୍ତଳ,
ସୌଜନ୍ୟ କୂଳରେ ଯହିଁ ଆସକ୍ତି-ମୃଣାଳେ
ବିକସିତ ସଦା, ମିତ୍ର-ଉଦୟ କାଳରେ,
କହ ଦେବ ! ମଧୁପାନ ଇଚ୍ଛି କେଉଁ ଜନ
ବୁଲିବ ସଂସାରେ ? ଯଥା ମତ୍ତ ମଧୁକର ;
ବର୍ଣ୍ଣ-ପଟ- ସୁରଞ୍ଜକ ସପ୍ତାଶ୍ୱ *— ଭାସ୍ୱର
ରଜପଣ ରତ୍ନ ବର୍ମ୍ମା - କର୍ଣ୍ଣ-ବଇଭବେ-
ରଞ୍ଜିତ-ଆଲେଖ୍ୟ ପଞ୍ଚ, ଭାରତୀ-ମୁକୁରେ
କମ୍ପିତ କରାଇ, ତବ ଚାରୁ-ବିନୋଦନେ
ସମର୍ପିଲି, ସମାଦରେ କରନ୍ତୁ ଗ୍ରହଣ ।

ତା ୧୪ । ୯ । ୧୯୧୦ { ସ୍ନେହାକାଂକ୍ଷୀ
ଦେବଦୁର୍ଗ { ପ୍ରଣେତା ।

---

* ସପ୍ତବର୍ଣ୍ଣ ; ବୃତ୍ତେର ଅନୁସରେଣ, ସୂର୍ଯ୍ୟ-
କିରଣରେ ସପ୍ତବର୍ଣ୍ଣ ଥିବା ବିଜ୍ଞାନ ସମ୍ମତ ମଧ ଅଟେ

## ପାଠକ ମାନଙ୍କ ପ୍ରତି ।

ପ୍ରଥିତ ଯଶା ଛନ୍ଦ-ଧୁରନ୍ଧର ରାଜା ରତ୍ନ-ବର୍ମ୍ମାଙ୍କ ଲିଖିତ ଜୀବନୀ - ପ୍ରଥମ ଭାଗ - ପ୍ରକାଶକ ପାଞ୍ଚଗୋଟି ଆଲେଖ୍ୟକୁ ଅବଲମ୍ବନ କରି ଏହା ରଚିତ ହୋଇଅଛି । ପ୍ରିୟ ପାଠକବୃନ୍ଦ ଛନ୍ଦକାରଙ୍କର ଚରିତ ଉକ୍ତ ମୂଳଗ୍ରନ୍ଥ ସନ୍ଦର୍ଶନ ପୂର୍ବକ ଏହା ପଠନକଲେ ଛନ୍ଦକାର ପ୍ରକୃତ ମାଧୁରୀ ଓ ଉଦ୍ଦେଶ୍ୟ ସହଜରେ ହୃଦୟଙ୍ଗମ କରି ପାରିବେ ।

—※:O:※—

# ଚିତ୍ର ।

## "ଶକୁନ୍ତଳାଙ୍କର ପତ୍ରଲିଖନ" ।

କି ସୁଖେ ସୁନ୍ଦରୀମଣି ! ନଳିନୀ-ପତ୍ରରେ ,
ରାଜର୍ଷି-ପ୍ରଣୟ-ଚିନ୍ତା ହୃଦୟେ ସୁମରି ,
ଏକାଗ୍ରେ ନିବେଶି ମନ ପୁଲକ-ଅନ୍ତରେ
ଚିନ୍ତୁଅଛ କାନ୍ତ-ମୁଖ-ଭାବ ଅନୁସରି ?
ଦେଖୁଅଛ ଅଗ୍ରତରେ ବିଗତ ପ୍ରଣୟ ?
ମୂର୍ତ୍ତିମନ୍ତ ଉଭା କରେ ସୁନ୍ଦରୀ-ପୁରତେ ?
ହୃଦୟ କୁ କାନ୍ତ-ପାଶେ କରି ଅଛ ଲୟ
ଦେଖେ କି କିଶୋର ଉଭା କିଶୋରୀ-ଅଗ୍ରତେ ?
ସମ୍ବୋଧି ମଧୁରେ ଧୀରେ "ଆର୍ଯ୍ୟପୁତ୍ର !" ବୋଲି
ସଖୀ- ଅନୁରୋଧେ କରେ ଲେଖନୀ-ଚାଳନା ,
ଗାଇ ତାଳି କିଶଳୟେ, ଭାବ-କଳ୍ପ-ବଲ୍ଲୀ,
ଭାବ-ଗର୍ଭ-ପ୍ରିୟଲେଖ କରଇ ରଚନା ।
ମାଲିନୀ-ତଟିନୀ-କଣା କଣବାହୁ ଘେନି
ହରୁଅଛି ଶ୍ରମ ଦେଖି ବାସର-ଯୌବନେ ,
ବଳ୍କଳବସନା ରମ୍ୟା ପ୍ରିୟସଖୀ ବେନି ,
ବସିଛନ୍ତି ସଖୀ-ପାଶେ ଚିନ୍ତାର ମଗନେ ।
ଗ୍ରୀବା-ଭଙ୍ଗେ ଅଭିରାମ କୁରଙ୍ଗ-ଶାବକ-
ରୋମନ୍ଥ ପତିତ ମୁଖୋଚ୍ଛିଷ୍ଟ-ନୀବାରକୁ ,

(୧୮)

ନାଗରଙ୍କେ ଚଉକା ପାଇଁ ପ୍ରେମାର୍ତ୍ତ-ଚାତକ ,
ବୋଝ ନେଉଅଛୁ ଦେଖ ଆପଣା ନୀଡ଼କୁ ।
ପ୍ରେମ-ମଣି ଲଭ ଯଦ୍ୟ ସର୍ବତ୍ର ଦୁର୍ଲ୍ଲଭ ,
ପ୍ରେମିକ ପ୍ରେମିକା ପକ୍ଷେ ଅଟଇ ସୁଲଭ ।

ଃ—ଃ—ଃ୦—ଃ—ଃ

## "ଶ୍ରୀକୃଷ୍ଣ ଓ ଦୂତୀ ସହ ରାଧିକା"।

କୃଷ୍ଣ !

ତୁମ୍ଭେହେ ପୁରୁଷ-ବ୍ୟାଘ୍ର ଅରାତି-ପ୍ରମାଥି,
ଆଜ କପାଁ ପ୍ରେମ- ମନ୍ତ୍ରେ ହୋଇଣ ଦୀକ୍ଷିତ ,
ଦେବ କୁସୁମେଷୁ ସ୍ମେରିଣ-ଜନ-ପକ୍ଷ ପାତ
କି ଛାର ଅସୂୟେ ତୁମ୍ଭେ ହୋଇଅଛ ଜାତ ?
ଅନୂଢ଼ା ରୂପସୀ ବୃଷଭାନୁ-ହେମାମଣି ,
ବିଳାସର ଭଙ୍ଗି ଯାର ସ୍ଫୁରଇ ଆନନେ ,
ଆଜ କପାଁ ଉଭା ସେହୁ ରୂପ-ଖଣି-ମଣି ,
ସଙ୍ଗେ ସହଚରୀ ଘେନ ଯମୁନା-ପୁଳିନେ ?
ଭାନୁସୁତା-କଲ୍ଲୋଳିନୀ-ଶୀତ ସମୀରଣ ,
ବହୁଅଛୁ ଧୀରେ ଧୀରେ ଅଳକ କମ୍ପାଇ,
ଲଲ-ସ୍ୱେଦ-ବିନ୍ଦୁ ପୁଣି କରୁଛୁ ହରଣ ,
ପ୍ରେମିକା ହୃଦୟ ପ୍ରେମେ ନିରତେ ମଜାଇ ;
ଅରୁଣ-କୁଙ୍କୁମେ ଲିପ୍ତ ବାରୁଣୀ-ଗଗନ
ପ୍ରତୀଚୀ-ଚରମାଚଳ ବନାଳି-ପ୍ରାନ୍ତରେ

ସର୍ବଗ୍ରାସୀ-ଦାବାନଳ-ଲୋହିତ-ଜ୍ୱଳନ-
ପଡ଼ାଏ ନିର୍ଝର-ଝର ଦଗନ୍ୟପଟରେ ।
କୃଷ୍ଣ !
କାହିଁ ତବ ଶ୍ୟାମ ମୂର୍ତ୍ତି ? କାହିଁ ସୁଦର୍ଶନ ?
ଝପାଁଇ ମୋହନ-ବେଣୁ ଚୁମ୍ବଇ ଅଧରେ ?
କାହିଁ ସେ କୌସ୍ତୁଭ ତବ ହୃଦ-ଆସଞ୍ଜନ ?
ଚାହାଁଇ ଦିଅଇ କପାଁ ଲଳିତା ସଖିରେ ?
କାହିଁ ଏବେ ତବ ସଖା ପାଣ୍ଡବ-ଅଗ୍ରଣୀ
ଦୁସ୍ତର-କୁରୁ-ସମର-ସାଗର ତରଣୀ
ବୁଡ଼ିବାକୁ ତବ ତତ୍ତ୍ୱ ଦେବ ଦେବାଗ୍ରଣୀ !

—:୦:—

"ଗଙ୍ଗାବତରଣ" ।

ଚକ୍ରବାଳ-ସୀମାବ୍ୟାପି ହିମାଦ୍ରି ଅଚଳ
ଫେନିଳ-ଲହରୀ-ଲୋଳ ଜଳଧି ପରାଏ,
ପରଶିଛି ଶୃଙ୍ଗ ପୁଣି କାଦମ୍ବ-ପଟଳ
ବିମ୍ବିତ ସୁନୀଲାମ୍ବର ଯାର ପାଦ ଯାଏ ।
ଜଷ୍ଟ ଅନଳ ଶିଖା ପଣ୍ଡାଏ ଅଟଳ
ଧ୍ୟାନମୂର୍ତ୍ତି ଭର୍ଗ ଅଙ୍କେ ଭଗୀରଥ ପ୍ରତି-
କ୍ଷିପ୍ତ, ସଂଯମ ଅଙ୍କ ହୋଇଛନ୍ତି ଚଞ୍ଚଳ,
ଅବତରେ ମୂର୍ତ୍ତିମତୀ ଗଙ୍ଗା-ସ୍ରୋତସ୍ୱତୀ ।

ଆକାଶୁଁ ଓହ୍ଲାଉଁ ଥିବା ସଂଯୋଗୀ ଦାମିନୀ†
ପରଶିବ ଭୂମିପୃଷ୍ଠେ ତୁଙ୍ଗ ଶିଖର
ମିଶାଇବ କୃଷ୍ଣ ଅଭ୍ର ସଙ୍ଗେ କାଦମ୍ବିନୀ ‡
ବୈପରୀତ୍ୟ ଗୁଣ * ଯୋଗେ ଟଳିବ ଭୂଧର ।
ପାଶବ-ସୁଲଭ-ହାସେ ହାସିତ ବୃଷଭ
ପୁଣି ପାଶେ ଚନ୍ଦ୍ରାଶୀଳା ନଗେନ୍ଦ୍ର-ନନ୍ଦିନୀ ,
ରମଣୀ-ସ୍ୱଭାବ-ଦ୍ୱେଷ-ସପତ୍ନୀ-ସମ୍ଭବ-
ଈର୍ଷ୍ୟାନଳ-ଧୂମ୍ର-ଧାର ପ୍ରାଏ ମନ୍ଦାକିନୀ ।
ସାଗର-ବଂଶନାସ୍ତିବ-କର୍ଣ୍ଣଧାର-ବୀର-
ରାଜର୍ଷି-ସତ୍ତମ ଅଛ ବୈଖାନସବ୍ରତେ
ଭକ୍ତ ଭଗୀରଥ ସୂର୍ଯ୍ୟ-ବଶଜ-ମିହିର
ମୂର୍ତ୍ତିମନ୍ତ-କୃତଜ୍ଞତା ପରାଏ ଅଗ୍ରତେ ।
କୃତମାନ୍ ବ୍ୟକ୍ତି ଏକା କର୍ତ୍ତବ୍ୟ-ସାଧକ
ଏକାଗ୍ରତା ଅଟେ ଯେଣୁ କାର୍ଯ୍ୟ-ନିୟାମକ ।

— ❊:O:❊ —

† Positive Electricity.

‡ ମେଘ ସଂଯୋଗ ପାଇଁ ବିଦ୍ୟୁତ୍ କାରଣ ଅଟେ ଏଣୁ ଗଙ୍ଗାର ଜଳଧାରା କାଦମ୍ବିନୀ ଓ ମହାଦେବଙ୍କର ଭୀମ କେଶରାଶି କୃଷ୍ଣ-ଅଭ୍ର ; ମୂର୍ତ୍ତିମତୀ ଗଙ୍ଗାଦେବୀଙ୍କ ଠାରେ ଦାମିନୀ କଳ୍ପନା ।

* ମେଘ ପକ୍ଷରେ ସଂଯୋଗୀ ବିଯୋଗୀ, ସଂଯମୀ ମହାଦେବଙ୍କ ପକ୍ଷେ କାମାସକ୍ତ ।

ଯମୁନାକୂଳେ

# "ରାଧିକା ଓ ସଖୀ ଲଳିତା"।

ସଖି !

କାହିଁ ମୋ କୈଶୋର-ହର ହୃଦୟ-ଦେବତା ?
କାହିଁ ସେହି ପ୍ରେମାକାଶ- ଉଦିତ ଭାସ୍କର ?
କାହିଁ ବୃନ୍ଦାବନ ଛାଡ଼ି ବାସନ୍ତିକ ଲତା ?
କାହିଁ ମଧୁମାଳ-ପ୍ରିୟ ମତ୍ତ ମଧୁକର ?
ଗୁନ୍ଥିଲି କୁସୁମମାଳା ଅତି ଯତ୍ନ କରି ,
ଭାଳିଥିଲି ଲମ୍ବାଇବି କଣ୍ଠରେ ପ୍ରିୟର
ଏବେ ହେଲା ସେହି ମାଳା ଅଯୋଗ୍ୟ ତାଙ୍କର,
କାହିଁ ଗଲେ କହ ସଖି ! ସେହି ପ୍ରିୟବର ?
କେଉଁ ଯୋଗେ ଆରମ୍ଭିଲି କୁସୁମ-ଚୟନ ,
ପୂଜିବାକୁ ମୋର ପ୍ରେମ-ତରୁ-କର୍ଣ୍ଣଧାରେ,
ରଚିଲି କୁସୁମ-ଦାମ , କଲଣି ଦଂଶନ
କାଳମୁଖ-ବ୍ୟାଳୀ ସମ ଦୁଃଖିନୀ-ଅନ୍ତରେ !
କାନ୍ତର ଅଯୋଗ୍ୟ ଯାହା, ସେ କପାଁ ମୋହର
କି ବୋଲି ଅଦରେ ତାକୁ ପରଶିବି ସଖି !
ଆଉ ଏବେ ଲୋଡ଼ା ନାହିଁ,ସେ ଦାମ -ସୁନ୍ଦର
କାହିଁ ଗଲେ କହ ମୋର ପ୍ରଣୟ-ପାରଖି ?

ସଖି !

କଲ୍ଲୋଳିନୀ-ପାରେ ଦେଖ ନମେରୁ-ବନାଳି ,
ଅଭ୍ରଂଲିହ-ଚୂଡା ହେରୁ ଯମୁନା-ଦର୍ପଣେ ,

ପ୍ରିୟ-ଅଦର୍ଶନ ଦୁଃଖ ନପାରି ସମ୍ଭାଳି ,
ସ୍ଥିର ଅଛ ଉଭା ହ ରେ ବିଷାଦ-ମଗନେ !
ଚନ୍ଦ୍ରଶିଳା-ପାଶେ ସଖୀ ବିମର୍ଷ-ବଦନା
ବନ୍ଧ୍ୟା-ହୃଦୟ-ଦୁଃଖ କରଇ କଳନା ।

ଃ——ଃ୦ଃ।—— —ଃ

## "ମୋହିନୀ"।

ମୋହିନୀ-ମୋହନ-ଛବି ଭବେ ଅତୁଳନ ,
ବିଳାସ-ବିଲୋଳ-ଇଚ୍ଛାବତୀ-ମୂର୍ତ୍ତିମତୀ
ପଞ୍ଚବାଣ-ଚିତ୍ତେଶ୍ୱର, ଅବା ପ୍ରଲୋଭନ ?
ଅବା ସୁରନଦୀ-ଲୀଳାବତୀ-କୁମୁଦ୍ୱତୀ ?
ଦୋହଲଇ ଦୋହଲାଇ ତରଙ୍ଗ ସୁନ୍ଦରୀ,
ଅଗ୍ରଯାୟୀ ହେବା କାଳେ ସମ୍ମୁଖ-ଗ୍ରୀବକୁ
କ୍ଷଣିକ ଉଚ୍ଚରେ ଛୁଲେ ରମ୍ୟା-କୃଶୋଦରୀ,
ବନ୍ଧୁର-ତରଙ୍ଗ-ଶୋଭା ଦେଖାଇ ପ୍ରିୟକୁ ?
ଉଡଇ ପଣନ୍ତ ନୀଳମାନ-ବୈଜୟନ୍ତ-
ପଟ୍ଟ ଏ, ଶ୍ରୀଅଙ୍ଗ-ଯଷ୍ଟି ଯେ କାଳେ ଦୋହଲ
ତରୁଶାଖା ବିଲମ୍ବିତ-ସ୍ତବକ-ଗାଞ୍ଜିତ-
ବାୟୁ-ବିଧୂନନ-ଶୋଭା ନେଉଥାଏ କିଳ ।
କି ଅବା ଗୋଧୂଳି-ତାମ୍ର ପଶ୍ଚିମାଶା-ପଟେ
ରଞ୍ଜିତ ସନ୍ଧ୍ୟାଭ୍ର ସଙ୍ଗେ ଫୁଟି ବାହାରଇ
ଅଥବା ଶାରଦ-ଶଶୀ ଶ୍ୟାମ-ଗିରି ତଟେ

ମୋହିନୀ-ବଦନ-ଛଳେ, ଶୋଭା ପ୍ରକାଶଇ ?

ହଷ୍ଟ-ହମୋହିନୀ-ଅପଯନ୍ତ-'କେଶପାଶ
ସତେ କି ସୁନୀଳ-ମେଲ-ଲହରୀ ଲହରେ ?
ମୁଖ-ଶିଖୀ ସାରସ ବା ହଣ୍ଡୀର ସଙ୍କାଶ
ଭାସି ଯାଉଅଛ ଯେସନେ କାଳନ୍ଦୀ-ସ୍ରୋତରେ ।
ନବା-ଅଭିନୟ କର ଅସିତ ଶ୍ରେମାଳୀ
କରହଣୀ-ଧୂମଧାର କରହ-ବନ୍ଧିର
ପଶ୍ଚାଏ ହୁକୂଳ ଭେଦ ତରଙ୍ଗ-ପ୍ରଣାଳୀ
ଇନ୍ଦ୍ରନୀଳ-ହାର-ଛଳେ ପ୍ରଶଇ ରୁଚିର ।
ସ୍ମରରୂପ ଅବା ସେହି ଯୌବନ-ଲକ୍ଷ୍ମା ?
କାଅଁ ଲଇ ଭ୍ରୂ ଛଳରେ ସୁନ୍ଦରୀ-ଆନନେ ?
ମୋହିନୀ-ମୋହନ-ମନ୍ତ୍ର ଅକ୍ଷର-ତୁଳିକା
ପ୍ରଣୟ-କର୍ତ୍ତରୀ ଅବା ଅପାଙ୍ଗ-ଦର୍ଶନେ ?
ସୁକଳା-ନିପୁଣା ଯଦ୍ଧ ପ୍ରାଜ୍ଞୀ-ପ୍ରଣୟିନୀ
ହୁଅଇ ସେ ପ୍ରଣୟୀର ପ୍ରାଣ-ଅହ୍ଲାଦିନୀ ।

ঃ—ঃCঃ—ঃ

ସମାପ୍ତ

# ଅନଙ୍ଗ ।

——:୦:——

## ୧ ମ ସର୍ଗ ।

ରାଗ – ବଙ୍ଗଳାଶ୍ରୀ ।

ପଦ୍ମ ରୂପେ ପଶୁ — ପଦ୍ମଙ୍କି ପାଇବା
ପାଇଁ କର ସଙ୍କଳପ
ହିମଗିରି -ଶିରେ ପାର୍ବତୀ ଯେକାଳେ
କରୁଥିଲେ ଘୋରତପ ।
ଭୁଜବୀର୍ଯ୍ୟେ ହୋଇ ଉଦ୍ଧତ ଯେକାଳେ
ଦୁରନ୍ତ ତାରକାସୁର
ଅମର - ଚମୂକୁ ହେଲେ ରଣେ ଜିଣି
କମ୍ପାଇଲା ସ୍ୱର୍ଗପୁର ।
ସୁଖ ଦୁଃଖ ଭାଗ୍ୟ ଚକ୍ର – ଅବର୍ତ୍ତନେ
ଅଣିବା ଦନେ ଉଦୃତ
ଅଲଙ୍ଘ୍ୟ ତା ବଧି ଦେବ ହେଲେ ସୁଦ୍ଧା
ନାହାନ୍ତି ଅବ୍ୟାହୃତ ।
ଅମରାବତୀରେ ଭୟେ ବ୍ୟାକୁଳିତ
ହୋଇ ସର୍ବଦେବଗଣ
ବ୍ରହ୍ମଲୋକେ ଯାଇ ବ୍ରହ୍ମାଙ୍କ ସମ୍ମୁଖେ
ଦୁଃଖ କଲେ ନିବେଦନ ।

ସମସ୍ତ ଦେବଙ୍କ ସରୋଜ-ବଦନ
ବିଷାଦେ ହୋଇଛି ଫିକା
ବିମଳ ଚନ୍ଦ୍ରମା ହସେ ଯଥା ଅହା
ଆଚ୍ଛାଦିଲେ କୁହେଳିକା ।
ସକଳ ଦେବତା ବ୍ରହ୍ମାଙ୍କ ସମ୍ମୁରେ
ଉଭାହୋଇ ଯୁକ୍ତ ହସ୍ତେ
ଅବନତ ଶିରେ ସ୍ତବ ଆରମ୍ଭିଲେ
ତାରକ ବଧ ନିମନ୍ତେ ।
"ସୃଷ୍ଟି ପୂର୍ବେ ଦେବ ! ଅବ୍ୟକ୍ତ ରୂପରେ
ପ୍ରକାଶ ଥିଲ ଆପଣ,
'ସତ୍ତ୍ୱ ରଜ ତମ ବିଭାଗ ବଶରେ
ଉପାଧି କଲ ଧାରଣ ।
'ସେହି ତିନିଗୁଣେ ବ୍ରହ୍ମା, ବିଷ୍ଣୁ, ଶିବ
ମୂର୍ତ୍ତିତ୍ରୟ — ଆବିର୍ଭବ,
'ସୃଜନ ପାଳନ ସଂହାର ନିମନ୍ତେ
କ୍ଷମ ଅଟ ପଦ୍ମଭବ !
'କଟାକ୍ଷେ ଏ ଦୁଃଖ ଫେଡ଼ିପାର ପ୍ରଭୋ !
ଅଚିନ୍ତ୍ୟ ତୁମ୍ଭ ଶକତି,
'ବଚସ୍ପର ରୂପେ ପଦ୍ମପାଦେ ତବ
ଖଟଇ ସଦା ନିଯୁକ୍ତ ।"
ଶୁଣି ଦେବଙ୍କର ବିନୟ ଭାରତୀ
ଦୟାମୟ ପ୍ରଜାପତି

ସମସ୍ତ ବଦନେ ଭାଷିଲେ ଗମ୍ଭୀରେ
"କହ କି ହେଲା ଦୁର୍ଗତି ?
'ପ୍ରବଳ ପ୍ରତାପୀ ମହାବୀର୍ଯ୍ୟ ଶାଳୀ |
ଅଟ ଅହେ ଦେବଗଣ,
'କିପାଇଁ ମଳିନ ହୋଇଛି ତୁମ୍ଭର
ଶରତ - ଚନ୍ଦ୍ର - ବଦନ ?
'ହେଦେବ ବରୁଣ ତବ ହସ୍ତପାଶ
ଯେହ୍ନେ ହତବୀର୍ଯ୍ୟ ସର୍ପ,
'ଏଦୀନ ଦଶାକୁ ଲଭିଛି କିପାଇଁ
କାହିଁ ଗଲା ତବ ଦର୍ପ ?
'ଅହେ ଇନ୍ଦ୍ର ତୁମ୍ଭ ପ୍ରଭାମୟ ଧନୁ
କିପାଁ ଅଛି ପ୍ରଭାହୀନ ?
'ବଜ୍ର ପରିହରି କହ କି କାରଣେ
ହୋଇଅଛ ଏତେ ଦୀନ ?
'ଧନାଧିପ! ତବ ସୁବିଶାଳ ବାହୁ
ଶାଖାହୀନ ତରୁପରି ;
'ବହୁଛି କିପାଁଇ ଏପରି ଦଶାକୁ ?
ପ୍ରକାଶ ବିଶେଷ କରି ।
'ଯେ ଅମୋଘ ଦଣ୍ଡେ ଜଗତେ ଦୁର୍ଜ୍ଜୟ
ଅଟ ଅହେ ଧର୍ମ୍ମରାଜ!
'ସେ କିପାଁ ନସ୍ତ୍ରର ? ଭୂମି ବିଲେଖନ
କରୁଅଛ ତହିଁ ଅଜ ?

'ଅଛେ ବସ୍ତ୍ର ଗଣ ଅକପଟ ଚିତ୍ତେ
    କିବା ତୁମ୍ଭ ନିବେଦନ ?
'କିପାଁ ସମାଗତ ଅମୃଧାଶେ କହ
    ସନ୍ଦେହ କର ମୋଚନ ।"
ଶୁଣି ସୁରକୁଳ ଜନକ ଙ୍କ ପ୍ରଶ୍ନ
    ଲଭିଲେ ମନରେ ସୁଖ
କିନ୍ତୁ ବାଟେ ତାଙ୍କୁ ଉତ୍ତର ଦେବାକୁ
    ସମସ୍ତେ ହେଲେ ବିମୁଖ ।
ପଦ୍ମାକରେ ପଦ୍ମେ ମୃଦୁଲେ ଦୋଳନ୍ତି
    ସୁମନ୍ଦ ସମୀରେ ଯଥା ,
ସମସ୍ତ ନୟନେ ଜୀବ ଙ୍କୁ ସଙ୍କେତ
    କଲେ ଶଚୀକାନ୍ତ ତଥା ।
ଦେବଗୁରୁ ତହୁଁ ଭାଷିଲେ ବିନୟେ
    ଯୁଗ୍ମ କରି ବେନିହାତ
"ସକଳେ ଉତ୍ପୀଡ଼ି କରୁଛି ହେ ପିତଃ
    ଦୁରନ୍ତ ଦାନବ- ନାଥ ।
'ତାରକ-ପ୍ରତାପେ ତ୍ରିଲୋକ ଅସ୍ଥିର ;
    ହୋଇଛି ଅତି ପ୍ରଚଣ୍ଡ ;
'ତୁମ୍ଭ କୃପାବିନା ହେଲାଣି ଅକାଳେ
    ବିନାଶ ବ୍ରହ୍ମାଣ୍ଡ ଖଣ୍ଡ ।
'ଚନ୍ଦ୍ର, ସୂର୍ଯ୍ୟ, ବାୟୁ ସେବା କରୁଛନ୍ତି
    ଏ ଦୈତ୍ୟ କୁ ନିରନ୍ତରେ ;

'ସ୍ୱର୍ଣ୍ଣଦା - ସୁବର୍ଣ୍ଣ — କମଳ ସକଳ
ଗ୍ରେପିଅଛୁ ନିଜ ସରେ ।
'କରୁଛନ୍ତି ସେବା ପନ୍ଦର କଳାରେ
ସମୁଦିତ ଶଶଧର
'ତ୍ୟଜନ୍ତି କେବଳ ବନ୍ଧନ୍ତି ଯାହା
ମସ୍ତକେ ମୃଗାଙ୍କଧର ।
'ଦୈତ୍ୟ ଡରେ ନିଜ କର ପ୍ରକାଶନ୍ତି
ତେଣିକି ମନ୍ଦ ପତଙ୍ଗ (୧)
'ଦୈତ୍ୟଲୀଳା-ସରେ ଯେଉଁଠିକିରେ ହେବ
ସରୋଜର ନିଦ୍ରାଭଙ୍ଗ ।
'କୁସୁମ ଖସିବା ଭୟରେ ସମୀର
ଦୈତ୍ୟନାଥ-ଉପବନେ
'ଗାଙ୍ଗ-ବୃନ୍ଦାନିଳ ଅଧିକେ ନ ବହି
ରହିଛି ସଭୟ ମନେ ।
'ଦୈତ୍ୟଭୟେ ମହା ଭୀତ ଫଣିପତି
ତୋଳି ରତ୍ନୋଜ୍ଜ୍ୱଳଫଣା
'ଦୀପରୂପେ ଖଟି ଦୈତ୍ୟେନ୍ଦ୍ର ସଦନେ
କରୁଛନ୍ତି ଉପାସନା ।
'ଦୁର୍ଦ୍ଧର୍ଷ ଦାନବ ସ୍ୱକାର୍ଯ୍ୟ ପର୍ଯ୍ୟଙ୍କେ
ନିଦ୍ରାରେ ହେଲେ ମଗନ
'ଚତୁଃପାର୍ଶ୍ୱେ ସଦା ଶ୍ରମରେ ବନ୍ଦନ୍ତି
ତାଙ୍କୁ ସୁରବନ୍ଦୀଗଣ ।

(୧) ପତଙ୍ଗ=ସୂର୍ଯ୍ୟ

‘ବିମାନର ଗତି — ପଥ ବ୍ୟୋମେ ଏବେ
ହୋଇବାରୁ ପ୍ରତିହତ ,
‘ଭୁବନ ଦର୍ଶନେ ଦେବତା ସକଳ
ଲଭନ୍ତି ବାଧା ସତତ ।
‘ଆଶାଥିଲା ମନେ ଦାନବଙ୍କୁ ରଣେ
ସଂହାରିବେ ଅବା ହରି ,
‘ଆମ୍ଭ କରମକୁ ହରି-ଚନ୍ଦ୍ରହେଲା
ତା ଛୁଟେ ପଦକ ପରି ।
‘ଶରଣ ପଶିଲୁଁ ସମବେତ ସର୍ବେଁ
ଇଚ୍ଛା ଶକ୍ତି ଏକାଧାରେ
‘ ଶରଣ ସମ୍ଭାଳ ହେ ଦେବ ତୁମ୍ଭର
ମହିମା ରହୁ ସଂସାରେ ” ।
ବୃହସ୍ପତି-ବାଣୀ ଶୁଣି ପରମେଷ୍ଠି
ଭାଷିଲେ ଗାମ୍ଭୀରେ ଗୀର
ସକଳ ଅମର ଶୁଣିଲେ ସଧୀରେ
କରି ଅବନତ ଶିର ।
“ଯେହେ ସୁରବୃନ୍ଦ ଅସୁର ଦୁର୍ଦ୍ଧର୍ଷ
ହୋଇଛି ମୋହର ବରେ
“ ସ୍ୱହସ୍ତେ ବଢ଼ାଇ କେମନ୍ତେ ମୁଁ ତାକୁ
ଛେଦିବି ସେହି ହସ୍ତରେ !
‘ ପୂର୍ବେ ମୋହଠାରୁ ପାଇଥିଲା ବର
ତପସ୍ୟା ଫଳେ ସୁରାରି

'ଶିବାତ୍ମଜ ହନ୍ତୁ        ଅନ୍ୟ କେହି ତାକୁ
ପାରିବେ ନାହିଁ ସଂହାର' ।
'ଭବମାୟାତୀତ        ମହାଯୋଗୀ ଭବ
ଯୋଗେ ଥାନ୍ତି ଯେଣୁ ରତ
"ଶିବାତ୍ମଜ" କଥା        ମଣେ ମନେ ଦୈତ୍ୟ
ଆକାଶ-କୁସୁମ ବତ ।
'ଭାଗ୍ୟମଦେ ଅନ୍ଧ        ଦୁରନ୍ତ ଅସୁର
ନାକକୁ ମଣେ ଅକ୍ଷୟ
'ସୁକର୍ମ୍ମେ ବଢ଼ିଲା        କୁକର୍ମ୍ମେ ଛିଡ଼ିବ
ନକର ଏଥି ସଂଶୟ ।
'ତୁମ୍ଭ ଭାଗ୍ୟଫଳେ        ଅଳ୍ପଦିନେ ପୁଣି
ଉମା-ରତ ହେବେ ଭବ
'ଅସମ୍ଭବ ଯାହା        ମଣନ୍ତି ପ୍ରାଣିଏ,
କାଳେତ ହୁଏ ସମ୍ଭବ ।
'ତୁଷାର ଭୂଧରେ        ତପସ୍ୟାରେ ହର-
ସେବୁଛନ୍ତି ମହାମାୟା
'ସେହି ସେ ଭଜନ        ଭବେ ଏକା ସିନା
ହେବାକୁ ମହେଶ-କାୟା ।
'ତାଙ୍କଠାରେ ଭବ-        ମତ ବଳାଇବା
ଲାଗିହୁଅ ସଯତନ
'ବାହୁଡ଼ ସ୍ୱପୁରେ,        ଅଚିରେ ତୁମ୍ଭର
ବାସନା ହେବ ପୂରଣ" ।

—*:o:*—

### ୨ୟ ସର୍ଗ ।

ରାଗ – କଳଶା ।

ବସେଛି ଦେବ ବଜ୍ରଧର ରତ୍ନ-ସିଂହାସନେ
ସଙ୍ଗେ ଶଚୀ, ଚତୁର୍ଦ୍ଦିଗେ ଛନ୍ତି ଦେବଗଣେ
ଭାଷିଲେ ଗମ୍ଭୀରସ୍ୱରେ ବୀର ସୁରପତ
“ କେହେବ ସାର୍ଥକ ଏଥି ? କହ ବୃହସ୍ପତି ” ॥
ଶୁଣିଣ ଦେବଦେବିବନ୍ଧ ଇନ୍ଦ୍ରଙ୍କ ବଚନ ,
କହିଲେ “ଏଥିକି ଏକା ମଦନ ଭାଜନ ” ॥
ତୁଷ୍ଟହୋଇ ମଦନକୁ ସ୍ମରନ୍ତେ ଦେବେଶ ,
ପୁଷ୍ପଧନୁ ଧରି କାମ ତତ୍କ୍ଷଣେ ପ୍ରବେଶ ॥
ବାସବଙ୍କ ପାର୍ଶ୍ୱଦେଶେ ବସି ରତି-ପତି ,
ଭାଷିଲେ ବିନମ୍ରବାକ୍ୟ କରିଣ ପ୍ରଣତି ॥
“କହ ଦେବ ! କିଏ ତୁମ୍ଭ ପଦ ଅଭିଳାଷେ ,
‘ସଂଯମ କରିଛି ଚିତ୍ତ ତପସ୍ୟା ସକାଶେ ?
‘କେ ଅବା ନସହିପାରି ପୁନର୍ଜନ୍ମ କ୍ଲେଶ ,
‘ମୁକ୍ତିମାର୍ଗେ ଚିତ୍ତବୃତ୍ତି କରିଛି ଆବେଶ ?
‘ଆଜ୍ଞାହେଲେ ଧର୍ମ୍ମ ଅର୍ଥ ଦେବି ତାର ସାର
‘ନଦୀତଟ ଭଙ୍ଗେ ଯଥା ପ୍ଳାବନ ର ବାରି ॥
‘କିଷସ୍ତୁ ବାସନାରୂପା ଦୂତୀ ସଂପ୍ରେରଣେ
‘ଲୋଟାଇବ ଶିର ତାର ରମଣୀ-ଚରଣେ ॥
‘କହ କେଉଁ ପତିବ୍ରତା ରମଣୀ-ରତନ ,
‘ପାତିବ୍ରତ୍ୟ ଅନୁଷ୍ଠାନେ ବଳାଇଛି ମନ ?

‘ ହୋଇଛନ୍ତି ଆପଣ ବାମା – ପ୍ରଣୟେ ଆସକ୍ତ ,
‘ ସେବେହେଁ ଉପେକ୍ଷା କରେ ନତେଜି ସ୍ୱବ୍ରତ ॥
‘ ବ୍ରତଭଗ୍ନ କରି ତାକୁ ଦେବ ଘୋରବ୍ୟଥା ,
‘ ଲମ୍ବାଇବ ତୁମ୍ଭ କଣ୍ଠେ ତାର ବାହୁଲତା ॥
‘ ଅଙ୍କାକର ହେବ ସେହୁ ଶୀଘ୍ର ହରହ୍ଣୀ ,
‘ କରିବ ତାହାକୁ ନବ ପଲ୍ଲବ – ଶାୟିନା ॥
‘ କୋପେ ପ୍ରସ୍ଫୁରିତାଧରୀ କୋପନା ର ମନ ,
‘ ଦ୍ରବାଇବ ବହ୍ନିତାପେ ଲବଣୀ ଯେସନ ॥
‘ ତୁମ୍ଭ ଶୃଙ୍ଗୀରେ ଯେହୁ ହୋଇଛନ୍ତି ବଧିର ,
‘ ତୁମ୍ଭ ସହବାସ ପାଇଁ ହେବ ସେ ଅଧୀର ॥
‘ ଲୋହାନାଙ୍କ ବକ୍ଷେ ପ୍ରଭୁ! ଲଭୁସେ ବିଶ୍ରାମ ,
‘ ଏବାଣର ଦୁର୍ସହ ଅଛି କେଉଁ କାମ ?
‘ ଏହି ଫୁଲ୍ ବାଣେ ମୋର ମଧୁ ସଙ୍ଗୀ ହେଲେ ,
‘ ଥାଉଁ ଆନ , ହର – ଧୈର୍ଯ୍ୟ ଟଳାଇବ ହେଲେ ” ।
ମଦନ – ବଚନ ଶୁଣି ଦେବ ଶଚୀପତି ,
ସହାସ୍ୟ ବଦନେ ମୀନକେତନେ କହନ୍ତି ॥
“ସାଧୁ ସାଧୁ ପୁଷ୍ପଧନ୍ୱା ! କ୍ଷମତା ତୁମ୍ଭର ,
‘ ତୁମ୍ଭଯୋଗେ କାର୍ଯ୍ୟ ସିଦ୍ଧ ହୋଇବ ଅମ୍ଭର ॥
‘ ଜାଣିଛୁ ମୁ ପୂର୍ବୁଁ ତୁମ୍ଭ ପରାକ୍ରମ ମାନ ,
‘ ରତିପତି ଅଟ ତୁମ୍ଭେ ମୋହର ସମାନ ,
‘ ଏବଜ୍ର ଅବର ତୁମ୍ଭେ ଅସ୍ତ୍ର ମୋର ବେନି ,
‘ ଅଟଳ ମୋ ପ୍ରଭୁପଣ ହିଦ୍ୱେ ଏଘେନ ॥

'ମାତ୍ର ତପୋବଳ ପାଶେ ବଜ୍ର ହତବୀର୍ଯ୍ୟ,
'କି ନପାରେ ସାଧି ତୁମ୍ଭ କାର୍ମୁକ ଅଧିଜ୍ୟ?
'ଦେବଗଣେ ଶତ୍ରୁ-ଜୟ କାମନା କରନ୍ତି,
'ଶିବ ତପୋଭଙ୍ଗ ପାଇଁ ଚିନ୍ତାକୁଳ ମତି।
'ଶିବଙ୍କୁ ପାଇବା ଆଶେ ଦେବୀ ହୈମବତୀ,
'ହିମାଚଳ ଶୃଙ୍ଗେ ଘୋର ତପ ଆଚରନ୍ତି॥
'ବ୍ରହ୍ମାଣ୍ଡ-ଠାକୁର ଯୋଗ୍ୟ ସେହି ଠାକୁରାଣୀ,
'ଭାଜନ ହେବାକୁ ଏକା ସେହି ଭବରାଣୀ॥
'ଜନମିବେ ଉମା ଶିବ ଯୋଗେ ଯେ କୁମାର,
'ଏକଷ୍ଣୁଁ ଦେବଙ୍କୁ ସେ କରିବେ ଉଦ୍ଧାର॥
'ଏ ବିଷୟେ ଫୁଲଶର କର ହେ ଯତନ,
'ଗୌରୀ ପ୍ରତି ଶିବ-ମନ କରାଅ ପ୍ରବଣ"॥
ଇନ୍ଦ୍ରଙ୍କ ବଚନ ଶୁଣି ଦେବ ରତିପତି;
ମଧୁ ସଙ୍ଗେ ହିମାଚଳେ କଲେ ଶୀଘ୍ର ଗତି॥
ମଧୁ ସମାଗମେ ବୃକ୍ଷ ହେଲେ ପଲ୍ଲବିତ,
ଦକ୍ଷିଣୁ ଉତ୍ତରେ ଭାନୁ-ଗତି ଆବର୍ତ୍ତିତ॥
ଦକ୍ଷିଣୁ ବହିଲା ଧୀରେ ସମୀର ସୁବାସ,
କିଅବା ସେ ଦକ୍ଷିଣାର ବିରହ-ନିଶ୍ୱାସ?
ବାଲେନ୍ଦୁସଦୃଶେ ବଙ୍କା ପଲାଶ-କଳିକା,
ବିଯୋଗୀର ମନେ ଜାତ କଲା ଉତ୍କଳିକା॥
ଅଟବୀ-ରମଣୀ-ହେମନ୍ତାଙ୍କ-ଅଳଙ୍କାର,
ବିକଶିଲା ରୂପସାର ପୀତ କର୍ଣ୍ଣିକାର॥

ସ୍କନ୍ଧରୁ ପୁଷ୍ପିତ ହେଲା ରକ୍ତାଶୋକ ତରୁ
ନବଲାଢ଼ି ପ୍ରହାର ନବ ତରୁଣୀ-ପଦ୍ମରୁ ॥
ସ୍ଥାନେ ସ୍ଥାନେ ବିକଶିତ ହେଲା ନାଗେଶ୍ୱର ,
ଋତୁରାଜ ମଣ୍ଡିତ୍ତ୍ୱ ପ୍ରାୟେ ମନୋହର ॥
ଉଠିଲା କାନନୁ କଲ ବିହଙ୍ଗ ସଙ୍ଗୀତ ,
ମଧୁ ସମାଗମେ ସର୍ବେ ହେଲେ ଉଲ୍ଲସିତ ॥
ଫୁଲ୍ଲ ଫୁଲେ ଗୁଞ୍ଜରିଲା ମତ୍ତ ମଧୁକର ,
ବିରହୀ ମଣିଲା ତାକୁ କାମନାମା-କ୍ଷର ॥
ଭ୍ରମର-ଦମ୍ପତି ରସି ପ୍ରଣୟ ପୁଲକେ ,
ମଧୁପାନ କଲେ ଏକ କୁସୁମ ଚଷକେ
ଭରତଥ ପ୍ରିୟା ସଙ୍ଗେ ନାଚିଲା ଗଗନେ ,
ମଧୁ-ମଗ୍ନ ଗାଏ ପିକ ଅତି ହୃଷ୍ଟମନେ ॥
ସ୍ପର୍ଶସୁଖ ଅନୁବର୍ତ୍ତୀ ହୋଇ କୃଷ୍ଣସାର ,
ଶୃଙ୍ଗେ କଣ୍ଡୁୟନ କଲା ଅଙ୍ଗ ସ୍ୱ ପ୍ରିୟାର ॥
ଅର୍ଦ୍ଧଭୁକ୍ତ ମୃଣାଳକୁ ଚକ୍ରବାକ ଘେନ ,
ଚକ୍ରବାକୀ ମୁଖେ ଦେଲା ସ୍ନେହଭାବ ଘେନ ॥
ପ୍ରେମମଦେ ମତ୍ତ ହୋଇ କିଂପୁରୁଷ ଗଣ ,
ଅନୁରାଗେ କଲେ ବାମା-ବଦନ ଚୁମ୍ବନ ॥
ସ୍ମରଆଜ୍ଞା ଶିରେ ଧରି ମତ୍ତ ହେଲେ ରସେ ,
ପ୍ରାଣୀଏ, କି ଜଳେ , କିବା ସ୍ଥଳେ ବିହାର୍ଯ୍ୟସେ ॥
ସୁରାସୁର-ନମସ୍କୃତ ଶାସନ କାମର ,
ଥାଉ ଜଙ୍ଗମର କଥା , ବ୍ୟାପିଲା ସ୍ଥାବର ॥

କୁସୁମ-ସ୍ତବକ-ସ୍ତନା ପ୍ରବାଳ-ଅଧରୀ,
ନବ ବିଳାସିନୀ ରୂପା ସୁରମ୍ୟ ବଲ୍ଲରୀ
ପ୍ରେମାନନ୍ଦେ ଯାଚେ ଭିଡ଼ି ତରୁ - ପୁଂଷଗଣ—
-ଶରୀର କୋମଳ ଭୁଜେ କଲେ ଆଲିଙ୍ଗନ ॥
ସଙ୍ଗେ ସଙ୍ଗେ ଅପ୍ସରୀର ସଙ୍ଗୀତ ମଧୁର,
ହେଲେ କଲା ମୁନି-ମନ ବିରହେ ବିଧୁର ॥
ବିଳାସ-ବାସନା-ସ୍ରୋତେ ବୁଡ଼ିଲା ବଦନ,
ଅକାଳ ବସନ୍ତେ ଶାନ୍ତ-ରସାସ୍ପଦ ବନ ॥
ମହାକ୍ଳେଶେ ଚିତ୍ତ ବୃତ୍ତି ଆଣି ନିଜ ବଶେ
ସମାଧିରେ ରତ ପୁଣି ହେଲେ ସେ ତାପସେ ॥

—**:o:**—

୭ମ ସର୍ଗ ।

ରାଗ - ରାମକେରୀ ।

ଉଗୁଆଳିଆଇ ଧୂର୍ଜ୍ଜଟୀ -
— ଧ୍ୟାନକୁଞ୍ଜ ତୋରଣେ
ତର୍ଜ୍ଜନୀ ସଙ୍କେତେ ଶାସିଲେ
ନନ୍ଦୀ ପ୍ରମଥଗଣେ ।
ସେ ସଙ୍କେତେ ସ୍ତବ୍ଧ ନମିଷେ
ହୋଇ ଗଲା କାନନ
ନବର୍ତ୍ତିଲା ଅଳି-ଝଙ୍କାର
ପକ୍ଷୀ-କଳ କୂଜନ ।

ନିଶ୍ଚଳେ କୁରଙ୍ଗେ ରହିଲେ
ଏକା ଧ୍ୟାନେ ଅନାଇଁ
ଗୋଟିଏ ପଲ୍ଲବ ପାଦପ —
-ଡାଳେ ହଲୁଲା ନାହିଁ ।
ବନଭୂମି ତହୁଁ ଦଶିଲା
ଯେସନେ ଅଲେଖ୍ୟ ଲେଖା
ପୁଷ୍ପଚାପ ନନ୍ଦୀ-ଛମୁରେ
ଡରେ ନଦେଲା ଦେଖା ।
ଦେବଦାରୁ ମୂଳେ ବେଦିକା
ହୋଇଅଛୁ ନିର୍ମିତ
ସମାଧି ଆସନେ ଆସୀନ
ତହିଁ ନୀଳଲୋହିତ ।
ଶିବଙ୍କୁ ଅଦୂରେ ଏସନ
ଦେଖି ମୀନକେତନ
ଭୟେ ହସ୍ତୁଁ ଖସି ପଡ଼ିଲା
ତାର ଶର-ଆସନ
ଏହିକାଳେ ବିଶ୍ୱମୋହିନୀ
ହିମାଳୟ ନନ୍ଦିନୀ
ତ୍ର୍ୟମ୍ବକଅର୍ଚ୍ଚନା ସକାଶେ
ହେଲେ ଅଗ୍ରଗାମିନୀ ।
ଗମନ କାଳେ କି ଯତନ
ରମ୍ୟ ପଦ ଯୁଗଳ

ତ୍ରିତପଦ ଦେହେ ସକଳେ
କିବା ସ୍ଥଳ କମଳ ?
ଚଳ ଚଳ ଦିଶେ ଶ୍ରୀଅଙ୍ଗେ
ଅଭିନବ ଯୌବନ
ପିବର ହୋଇ କି ସୁନ୍ଦର
ଦିଶେ ଦେବୀ – ଜଘନ ।
ରମ୍ୟ ଶାତୋଦଳ ପଲ୍ଲବ
ନୁହେ ଉଦରେ ପର
ନାଭି ଦିଶେ ଅତି ଗମ୍ଭୀର
ବାରି ଆବର୍ତ୍ତ ପର ।
ରମ୍ୟ କଟିଦେଶ ତ୍ରିବଳୀ
ଯୋଗେ ଅତି ଶୋଭିତ
କାମର ଗମନେ ସୋପାନ
କିବା ଅଟେ ରଚିତ ?
ପୟୋଧର ବେନି କନ୍ଦଇ
ରମ୍ୟ ପଦ୍ମ-କଳିକା
ତହୁପରେ ବାଃସ୍ତେ ଦୋଳଇ
ଗୁରୁ ରତ୍ନ-ମାଳିକା ।
ଛବା କୁସୁମକୁ ଜିଣିଛି
ଦେବୀ – ଗୁରୁ ଅଧର
ଥୋପିପଢ଼େ ତହୁଁ ରକ୍ତିମା
ଆହା କି ମନୋହର ।

ଅତି ଯତନରେ ଗଠିତ
 ନାସା ପଦ୍ମମୁଖୀର,
ତିଳ ଫୁଲକୁ ଏ ଜିଣିଛି
 ହୋଇ ଅତି ରୁଚିର ।
ସୁବିଶାଳ ଭୂରୁ ଦର୍ଶନେ
 ମନେ ପାଏଁ ଏସନ
ଥୋଇଛି କିଅବା କାର୍ମ୍ମୁକ
 ଏଥି ବୀର ମଦନ ?
ନୀଳାକାଶ ପଟ୍ଟ ହୋଇଛି
 ଉମା ସୁନ୍ଦର ବେଣୀ
ଛାୟାପଥ ପଛ ଶୋଭଇ
 ତହିଁ କୁସୁମ ଶ୍ରେଣୀ ।
କେଶରାଶି ହୈମବତୀଙ୍କ
 ହେଉ ଅଛି ଦୋଳିତ
କାଳିନ୍ଦୀ ପ୍ରବାହେ ଲହରୀ
 ପ୍ରାୟେ ଅତି ଶୋଭିତ ।
ସଜାଡ଼ି ଅଛନ୍ତି କୁନ୍ତଳ
 ଦେବୀ ଭାଲ-ପଟ୍ଟରେ
ସତେକି ଶିଉଳୀ ପଡ଼ିଛି
 ପଦ୍ମ କୁସୁମ ପରେ ।
ଲବଣୀରୁ ବଳି ସୁନ୍ଦରୀ —
 — ମଣି-ତନୁ କୋମଳ

କାନ୍ତରେ ଦଳର ଗରବେ
ବାଳା କେତକୀ ଦଳ ।
ତ୍ରିଲୋକ ସୁନ୍ଦରୀ ଗୌରୀଙ୍କି
କାମ କର ଦର୍ଶନ
କାର୍ଯ୍ୟସିଦ୍ଧି କଳ୍ପେ ହେଲସେ
ଏବେ ନିଃଶଙ୍କ ମନ ।
ଶମ୍ଭୁ-ଦ୍ୱାରଦେଶେ ଅଗତା
ହିମାଳୟ - ନନ୍ଦନୀ
ବେନି ବନଦେବୀ ଦେବୀଙ୍କ
ହୋଇଛନ୍ତି ସଙ୍ଗିନୀ ।
ପ୍ରମଥାଧିପତି ସେକାଳେ
ଧ୍ୟାନୁଁ ହେଲେ ବିରତ
ଜଣାଇଲେ ନନ୍ଦୀ ଶ୍ରୀମୁଖରେ
"ଦେବୀ ଦ୍ୱାରେ ଆଗତ" ।
ଶୁଣି ତ୍ରିପୁରାରି ଇଙ୍ଗିତେ
ଦେଲେ ତାଙ୍କୁ ସମ୍ମତି
ପ୍ରବେଶ ହୋଇଲେ ତତ୍‌କ୍ଷଣେ
ପାଶେ ପାର୍ବତୀ ସତୀ ।
ପୁଷ୍ପମାଳା ରଖି ଶ୍ରୀମୁଖରେ
ଦେବୀ କରୁଁ ପ୍ରଣତି
କର୍ଣ୍ଣିକାର ଦେବୀ-କର୍ଣ୍ଣରୁ
ଖସିଗଲା ତଡ଼ିତ ।

ବିଭୂତି ଭୂଷିତ ଯୋଗୀନ୍ଦ୍ର
ଦେଲେ ସନ୍ତୁଷ୍ଟେ ବର
"ଅନନ୍ୟ - ଆସକ୍ତ ବରକୁ
ତୁମ୍ଭେ ଲଭ ସତ୍ୱର" ।
ଖଞ୍ଜି ସମ୍ମୋହନ ବାଣକୁ
କାମ ସମୟ ଜାଣି
ଟାଣି କର୍ଣ୍ଣପାଏ ଦେଲାସେ
ଶିବ ହୃଦୟେ ହାଣି ।
କମ୍ପିଲା ତକ୍ଷଣେ ମହେଶ
ମନେ କାମ ବିକାର
ଅଗ୍ରେ ଦେଖି ଉମା ପାର୍ବତୀ
ନାରୀ ସୁନ୍ଦରୀ ସାର ।
ଅଷ୍ଟହିଁ ସାତ୍ତ୍ୱିକ ବିକାରେ
ହେଲା ଅଙ୍ଗ ଉତ୍ଫୁଲ୍ଲ
ବରଷା ସମୟେ ବିକଶେ
ଯଥା କଦମ୍ବ ଫୁଲ ।
ସେଥିଲେ ହୃଦୟ ସଂଯମେ
ପ୍ରଭୁ ବିଭୂତିଅଙ୍ଗ
ଅଙ୍କୁଶେ ସ୍ୱବଶେ ଆଣନ୍ତି
ଯଥା ମତ୍ତ ମାତଙ୍ଗ ।
ହୃଦୟ ବିକୃତି କାରଣ
ଶିବ ଜାଣିବା ପାଇଁ

( ୧୩୨ )

ଉନ୍ମିଳିତ ତିନି ଲୋଚନେ
ଦେଲେ ଶୋଭି ଦଗେ ଶମ୍ଭୁ ।
ଅଗ୍ରତେ ଦେଖିଲେ ଦକ୍ଷିଣ-
ନେତ୍ରେ ପୁରମଥନ
ବଦ୍ଧମୁଷ୍ଟିକରେ ଆନତ-
ସ୍କନ୍ଧେ ଉଭା ମଦନ ।
ଚକ୍ରୀକୃତ ଚାପ ; କୁଞ୍ଚିତ
ସବ୍ୟ ପାଦ ଆନତ
କରିବାକୁ ଶର ପ୍ରୟୋଗ
ହେଉ ଅଛି ଉଦ୍ୟତ ।
ତପେ ବାଧାଦେଖି ଧୂର୍ଜଟୀ
ଦେବ ହେଲା କ୍ରୋଧିତ
କାଳଚକ୍ର ପରି ହୋଇଲା
ତିନି ନେତ୍ର ଘୂର୍ଣ୍ଣିତ ।
ଗର୍ଜିଲେ କଣ୍ଠରେ ଭୁଜଙ୍ଗେ
ହଳାହଳ ଉଦ୍ଗାର
ସଭୟେ ହିମାଦ୍ରି - ତନୁଜା
ଗଲେ ପାଶୁଁ ବାହାର ।
ଦେଖୁଁ ଦେଖୁଁ ଭାଲ - ନେତ୍ରରୁ
ଅଗ୍ନି ହେଲା ବାହାର
ଭୟେ ସୁରାସୁର କମ୍ପିଲେ
ସ୍ତବ୍ଧହେଲା ସଂସାର ।

ହେ ହର ସଂହର ସଂହର
କ୍ରୋଧ ଶୀଘ୍ର ସଂହର
ବୋଲଣ ବ୍ୟାକୁଳେ ଡାକିଲେ
ସ୍ୱର୍ଗୁଁ ଦେବପ୍ରକର ।
ଦେଖୁଁ ଦେଖୁଁ ଅଗ୍ନିକଣିକା
ପଡ଼ି ମାର ଉପରେ
ତୃଣପ୍ରାୟ କଲା ଦହନ
ତାର ତନୁ ସତ୍ୱରେ ।
ଭସ୍ମ ଅବଶେଷ ହୋଇଲା
କାମ – ସୁନ୍ଦର ଅଙ୍ଗ
ଚତୁର୍ଦ୍ଦଶ ପୁରେ ରହିଲା
ତାର ନାମ 'ଅନଙ୍ଗ' ।

—⁂ ୦ ⁂—

ସମାପ୍ତ ।

# ଭୂମିକା ।

ଉତ୍କଳ-ତନୟମାନଙ୍କ ସାହିତ୍ୟ ଚର୍ଚ୍ଚାର ସ୍ପୃହା ଉତ୍ତରୋତ୍ତର ବର୍ଦ୍ଧନଶୀଳ ହେଉଥିବାର ଦେଖି ମୁଁ ଏହି "ମାୟାଶବରୀ" ର ରଚନାରେ ପ୍ରବୃତ୍ତ ହୋଇ ଅଦ୍ୟ ଏହା ଜନ ସମାଜରେ ସଶଙ୍କ ଚିତ୍ତରେ ପ୍ରକାଶ କଲି । ଏହା ମୋହର ନବୋଦ୍ୟମର ଫଳ , ସୁତରାଂ ରଚନାଟି ଯେ ସଂପୂର୍ଣ୍ଣ ଭ୍ରମ-ପ୍ରମାଦ - ବିହୀନ, ଏକଥା ମୁଁ କହିନପାରେ । ଗୁଣଗ୍ରାହୀ ପାଠକମାନଙ୍କର ଏହା ପ୍ରତି ଅନୁକୂଳ ଦୃଷ୍ଟି ନିପତିତ ହେବାର ଦେଖିଲେ ମୁଁ ମୋହର ଶ୍ରମ ସାର୍ଥକ ବୋଧ କରିବି । ୨୧ । ୨ । ୧୮୯୪

ଶ୍ରୀସଚ୍ଚିଦାନନ୍ଦ ଦେବ ।

# ୨ୟ ମୁଦ୍ରଣର ଭୂମିକା ।

ଉତ୍କଳର ସହୃଦୟ ସାହିତ୍ୟ-ରସିକମାନେ ସଶ୍ରଦ୍ଧ ଚିତ୍ତରେ ଏହି "ମାୟାଶବରୀ" ପୁସ୍ତିକାର ଆଦର କରିବାରୁ ଆଶାତୀତ ଅଳ୍ପକାଳ ମଧ୍ୟରେ ପ୍ରଥମ ମୁଦ୍ରଣର ପୁସ୍ତକ ଗୁଡ଼ିକ ନିଃଶେଷ ହୋଇଅଛି । ଏଥିରେ ମୁଁ ସମୁତ୍ସାହିତ ହୋଇ ବର୍ତ୍ତମାନ 'ମାୟାଶବରୀ'ର ୨ୟ-ସଂସ୍କରଣ ପ୍ରକାଶ କଲି ।

ପ୍ରଣେତା

—※:୦:※—

# ମାୟା—ଶବରୀ ।

( ପୌରାଣିକ-ଘଟଣା )

—*:o:*—

( ରାଗ—ରାମକେରୀ )

ତେଙ୍କ ଦନେ ଜଗନ୍ମାତା
କଇଲାଶ କନ୍ଦର
ଶବରଣୀ ବେଶେ ପ୍ରବେଶ
ବୃନ୍ଦାବନ ଭିତର । ୧
ଶିଖୀ ପୁଚ୍ଛ ଚୂଳ ମେଖଳା-
ଯୋଗେ ଶୋଭେ ଶ୍ରୀଅଙ୍ଗ
ତରଙ୍ଗିଣୀ ଦେହେ ଯେସନ
ଇନ୍ଦୀବର – ତରଙ୍ଗ । ୨
ବନଜାତ ପୁଷ୍ପେ ରଚିତ
ଅତି ଅପୂର୍ବ ହାର
କମ୍ବୁକଣ୍ଠୀ - କଣ୍ଠେ ଲମ୍ବିତ
ହୋଇ ଦଶେ ବାହାର । ୩
କେକୀ-ପୁଚ୍ଛ ମୌଳୀ ଚକୁର
ଦଶେ ସୁନ୍ଦର ଅତି
ନୀଳ ନୀରଧର ନକଟେ
ଇନ୍ଦ୍ର କୋଦଣ୍ଡ ମତ । ୪ ।

ଗୈରିକ ତିଳକ ଝଟକେ
ଦେବୀ - ଅଳକ ତଳେ
ମୁକ୍ତ କେଶପାଶ ଚୁମ୍ବଇ
ଶଂଭୁ ପଦ କମଳେ । ୫ ।
ଧରିଛନ୍ତି ଶିଖୀ କକ୍ଷରେ
ହିମଗିରି - ନନ୍ଦିନୀ
ନାନା ବର୍ଣ୍ଣୋଜ୍ଜ୍ୱଳ କଳାପ
ଲୋଟୁଅଛି ମେଦିନୀ । ୬ ।
ବସନ୍ତ-କୋକିଳ ପଞ୍ଚମେ
କରି ଗୀତ ଗାୟନ
ଶବରୀ ଙ୍କ ସଙ୍ଗେ ନିକୁଞ୍ଜେ
କରୁଛନ୍ତି ଭ୍ରମଣ । ୭ ।
ବୃନ୍ଦାରଣ୍ୟେ ବହୁ ଶବରୀ
ଭ୍ରମି ନାନା ରଙ୍ଗରେ
କରୁଛନ୍ତି ପୁଷ୍ପ ଚୟନ
ଶୈଳସୁତା - ସଙ୍ଗରେ । ୮
ଶରତ୍କାଳ ତାରା ମଧ୍ୟରେ
ଯଥା ପୂର୍ଣ୍ଣିମା ଶଶୀ
ଦିଶୁଛନ୍ତି ତଥା ପାର୍ବତୀ
ଯୋଷା ମଧ୍ୟରେ ପଶି । ୯
ଏଣେ ତେଣେ ହୋଇ ନିକୁଞ୍ଜେ
ଭ୍ରମୁଛନ୍ତି ଈଶ୍ୱରୀ

ଯୂଥ ସମାଶ୍ରିତା ଚକିତା
ମତ୍ତ କୁରଙ୍ଗୀ ପରି । ୧୦ ।
ଦେବୀ-ମୁଖଚନ୍ଦ୍ରେ ଶ୍ରୀକୃଷ୍ଣ-
-ନେତ୍ର ହେଉଁ ପତିତ
ହୃଦୟ ସମୁଦ୍ରେ ହୋଇଲା
ଭାବ ଊର୍ମ୍ମି ସ୍ଫୁରିତ । ୧୧
ଶ୍ରୀପତି-ହୃଦୟେ ଜନ୍ମିଲା
ଶୀଘ୍ର କାମ ବିକାର
ରୋମାଞ୍ଚିତ ହେଲା ଶରୀର
ନୀପ ପୁଷ୍ପ ପ୍ରକାର । ୧୨ ।
କୃଷ୍ଣ-ମନୋଗତ-ବାସନା
ଦେଖା ବୁଝି ବହନ
ଲୁଚିଲେ ନିକୁଞ୍ଜେ, ବାରିଦେ
କ୍ଷଣପ୍ରଭା ଯେସନ । ୧୩ ।
କାମାର୍ତ୍ତେ ଶ୍ରୀହରି ଡାକନ୍ତି
ଭଞ୍ଜି ବିନୟ ବାଣୀ
'ମୃଗନେତ୍ରି ! ବାରେ ମୁହଁ ଯା
କର ବନି ଗୃହାଣୀ । ୧୪
'ବିଳାସ ବିଲୋଳ-ଲୋଚନା !
ଶୁଣା ଶୁଣ ବଚନ
'ପ୍ରୀତି-ବତ୍ସଳା ! ମୋ ପ୍ରାର୍ଥନା
ବାରେ କର ଗ୍ରହଣ । ୧୫

ଧନ୍ୟ ମୋ ସୌଭାଗ୍ୟ, ସୁନ୍ଦରି !
ଦେଖା ପାଇଲି ତୋତେ
' ମୃତକ ପରାଏଁ ଯାଚକ,
କର କରୁଣା ମୋତେ । ୧୬
' ଲବଣୀରୁ ବଳି କୋମଳ
ମୃଦୁ ଅଙ୍ଗ ତୋହର
' କଣ୍ଟକିତ ବନେ କିଁପାଇ
ଅହା ଭ୍ରମୁଛୁ ଘୋର ! ୧୭
' ଭୋଗୁ ଅଛୁ ବହୁ ଯନ୍ତ୍ରଣା
ବାଳା ! ଭ୍ରମି ଏ ବନେ
' ଦୂରକର ଶ୍ରାନ୍ତ, ବିଶ୍ରାମି,
ଶୀତ ମନ୍ଦ ପବନେ । ୧୮
' ଶରଦିନ୍ଦୁ ଜିତ ବଦନୁଁ
ଶ୍ରମ—ବାରି ଝରୁଛି
' ପର୍ଯ୍ୟୁଷିତ ପଦ୍ମ ପରାଏ
ଅତି ମ୍ଳାନ ଦିଶୁଛି । ୧୯
' ମୋ ବାଣୀ ନଶୁଣି ଶୋଭାଙ୍ଗି !
କହ ପଳାଉ କେଣେ
' ମନୋହର ! ମନ୍ଦ ହାସରେ
ଅଳ୍ପେ ମୃହ୍ନୁଁ ଯା ଏଣେ । ୨୦
' ମୃଦୁ ଦେହ ତୋର, ହୃଦୟ
ନଶ୍ଚେ ମୃଦୁଳ ତର

‘ ଦୟାବନ୍ତ ! ଦୟା ପ୍ରକାଶ
ନକରଣ ପଥର । ୨୧
‘ ନିରାଶ ନକର ବରଷ
ବାରେ ପୀୟୂଷ ଜଳ
‘ ସନ୍ତାପିତ ପ୍ରାଣ ମୋହର
ଶୀଘ୍ର ହେଉ ଶୀତଳ । ୨୨
‘ ଦାସଜନ ଠାରେ ନିଗ୍ରହ
କପାଁ କରୁ ନ ଜାନା ?
‘ ଅଜ ମୁଁ ହୋଇଛି ତୋହର–
ପଦ-ପଙ୍କଜେ କିଣା । ୨୩
‘ ଆଜ ଏ ସୁରମ୍ୟ କାନନେ
ତୋତେ ଦେଖିଲି କ୍ଷଣେ
‘ ଝମକାର ପୁଷ୍ପ କାର୍ମୁକ
ମୋତେ ତର୍କେ ଅତନୁ । ୨୪
‘ ପ୍ରାଣଠାରୁ ଯାକୁ ଅଧିକ
ମଣି ମୁଁ ସେବୁଥିଲି
‘ ତେଜିଲି ତା ଆଶା କୁହକେ
ତୋର ପଡ଼ି ଛୁଇଲି ! ୨୫
‘ ତୋରୂପ ଲାବଣ୍ୟ ସଲୀଳେ
ବୁଡ଼ି ଗଲା ମୋ ମନ
‘ ବାରଣଗମନା ! ଥରେକ
ଦିଅ ପ୍ରେମାଲିଙ୍ଗନ” । ୨୬

ଏହିପରି ବହୁ ଡାକିଲେ
ବ୍ରଜରାଜ-କୁମାର
ନ ଶୁଣିଲା ପ୍ରାଣେ ପାର୍ବତୀ
କରୁଛନ୍ତି ବିହାର । ୨୭
ଚଞ୍ଚଳ ଗତିରେ ଶ୍ରୀପତି
ଯା'ନ୍ତେ ଗନ୍ତବ୍ୟ-ପାଖେ
ବଣା ଏଣୀ ପ୍ରାଣେ ପଳାନ୍ତି
ଦେଖି କପଟ ବାଘେ । ୨୮
ପଦ୍ମାକରେ ପଦ୍ମ- ପଲ୍ଲବ
ପ୍ରତିବନ୍ଧକ ପାଇ
ଗତି କଲା ପ୍ରାଣେ ମରାଳୀ
ଯା'ନ୍ତି ପକ୍ଷକୁ ଟେକିଁ । ୨୯
ଦ୍ରୁତ ଗତି କରି ଗୋଡ଼ାନ୍ତେ
ପଛେ ପଛେ ଶ୍ରୀହରି
ବନେ ବନେ ଦେଖି ପଳାନ୍ତି
ଘନେ ଚପଳା ପରି । ୩୦
ଧାଆନ୍ତେ ଖସିଲା କୁସୁମ
ଦେବୀ-ବେଣୀ ଶ୍ରବଣୁଁ
ଖସିଲା କି ଗୃରୁ ତାରକା
ଘନ-ନୀଳ ଗଗନୁଁ । ୩୧
ଖସିପଡ଼େ ଚୂଡ଼ା ମସ୍ତକୁଁ
ହୋଇ ଖଣ୍ଡ ବିଖଣ୍ଡ

ଭାଙ୍ଗି ପଡ଼ିଲାକି ଅକାଶୁଁ
ସତେ ଇନ୍ଦ୍ରକୋଦଣ୍ଡ ? ୩୨
ବ୍ୟସ୍ତ ହୋଇ ଦୋଲେ ଚରଣେ
ଘନ କୃଷ୍ଣ କୁନ୍ତଳ
ତରଣି-ତନୟା-ତରଙ୍ଗ
ଦ୍ରାପ୍ୟେ ଦଶି ଚଞ୍ଚଳ । ୩୩
କଣ୍ଟକିତ ବୃକ୍ଷେ ଅଟ୍କି-
ଯାଉଅଛି ଅଞ୍ଚଳ
ଊର୍ଦ୍ଧ୍ୱଶ୍ୱାସ ହୋଇ ସୁନ୍ଦରୀ
ହେଉଛନ୍ତି ବ୍ୟାକୁଳ । ୩୪
ସେତୁ ଭଗ୍ନ ହେଲେ ତଟିନୀ
ଯଥା କରଇ ଗତି
କୃଷ୍ଣ-ବାଞ୍ଛା ବହି ଏକାନ୍ତ
ତଥା ଦେବୀପାର୍ବତୀ । ୩୫
ଆଉ କାମାତୁରେ ଗୋପାଙ୍ଗନା-
ବ୍ରଜରାଜ- କୁମାର
କି ନୁହନ୍ତି ? ମନ ଜପଇ
ଯାହାଠାରେ ଯାହାର । ୩୬
ଦ୍ରୁତଗତେ ଦେବୀ ଭବାନୀ
ବନେ କରନ୍ତି ଗତି
କୋମଳ ଚରଣେ କଣ୍ଟକ
ଫୁଟି ଗଲା ଝଟତି

ସ୍ମୃତିେ ଗଭସ୍ତୀ ରହିଲେ
ଉଗ୍ର ଘୋର ସେ ସ୍ଥାନେ
ଦେଖି ହେଲେ ବଡ଼ ବ୍ୟାକୁଳ
ବ୍ରଜକିଶୋର ପ୍ରାଣେ । ୩୮
" ଲଭିଲୁକି କଷ୍ଟ ଶୋଭାଙ୍କି !
ଏହି ଦୁର୍ଗମ ବନେ "
ବୋଲି କ୍ଷିପ୍ର ଯା'ନ୍ତି ପାଶକୁ
ଅତି ବ୍ୟସ୍ତ ମନେ । ୩୯
ସୁକୋମଳ ପଦ୍ମ-ପାଦକୁ
ପ୍ରଭୁ ଶ୍ରୀହସ୍ତେ ଧରି
ପଚାରନ୍ତି " କାହିଁ କଣ୍ଟକ —
ବିଦ୍ଧ ହେଲା ପ୍ରଭୁ ! " । ୪୦
ଉପାଡ଼ିବା ପାଇଁ କଣ୍ଟକ
ବ୍ୟାକୁଳ ମନରେ
ଉଦ୍ୟୋଗୀ ହୁଅନ୍ତେ , ଭୂତେଶ
ଦେଖାଇଲେ ସ୍ୱରୂପରେ । ୪୧
ଗଳେ ମୁଣ୍ଡ ମାଳା, ମସ୍ତକେ
ଜଟା ଜୁଟ ଭୂଷଣ
ବିଷାଣ , ତ୍ରିଶୂଳ ହସ୍ତରେ
କରି ଛନ୍ତି ଧାରଣ । ୪୨
ଶୁଭ୍ର ଶରଦଭ୍ର ନିନ୍ଦିତ
ଭସ୍ମ ବୋଳା ଶରୀରେ

ଫଣା ତୋଳି ଯେବେ ସମୀର
ଭୀମ ଭୁଜଙ୍ଗ ଶିରେ । ୪୩
କୁଣ୍ଡଳିରେ ବୁଡ଼ି ପଶଇ
ଯଥା ରଜତ ଗିରି
ଉତ୍ତର ତେସନ ଦିଶଇ
ଭବ-ଦୁଗ୍ରହ-ଛିରୀ । ୪୪
ଶିବ ଦର୍ଶନେ ଶ୍ରୀହରି
ଲଜ୍ଜା ପାଇ ବଦନ
ସ୍ତିମିତ ଲୋଚନେ ତକ୍ଷଣେ
ଯୋଡଦେଲେ ବନ୍ଦନ । ୪୫
ଏ କି ଚମତ୍କାର ! ଦେଖନ୍ତେ
ପାଶେ ନାହିଁ ଶବରୀ,
ହରପାଶେ ଉଭା ଦେଖିଲେ
ହର-ହୃଦୟେଶ୍ୱରୀ । ୪୬
ଶବରୀ ର ବେଶ ଭୂଷଣ
ଯେତେ କିଛିହିଁ ନାହିଁ
ଦେଖୁଁ ଦେଖୁଁ ନେତ୍ର ପଲକେ
ଗଲା ଯେସବୁ କାହିଁ । ୪୭
ଯୋଗ୍ୟ ବେଶଧରି ଗଉରୀ
ଉଭା ଶଙ୍କର ପାଶେ
ସଲଜ୍ଜେ କୃଷ୍ଣଙ୍କୁ ଚାହିଁଲେ
ମୃଦୁ ମଧୁର ହାସେ । ୪୮

କୃଷ୍ଣ - କ୍ଳାନ୍ତରୂପ ଦର୍ଶନେ
ପ୍ରଶ୍ନ କଲେ ଶଙ୍କର
"ହେ ଗୋକୁଳଚନ୍ଦ୍ର କିପାଁଇ
କ୍ଳାନ୍ତ ତନୁ ତୁମ୍ଭର" । ୪୯
ସଲଜ୍ଜେ ଶ୍ରୀହରି କହିଲେ
"ଏହି ବୃନ୍ଦାବନରେ
'ଭ୍ରମୁଁଥିଲି ଏକ ଶବରୀ
ଶିଖୀ ଘେନ କକ୍ଷରେ । ୫୦
'ଅନୁସରିଲି ମୁଁ ତାହାକୁ
ଶିଖୀ-ଚନ୍ଦ୍ରିକା ପାଇଁ *
'ଚକ୍ଷୁ ଅଗ୍ରେଥାଇ ପଲକେ
ଗଲା ଉଭେଇ କାହିଁ" । ୫୧
ଶୁଣି ଶୈଳସୁତା କହନ୍ତି
ମନ୍ଦ ହାସେ ବଚନ
"ମୋହିନୀ ମୂରତି + କଥାକୁ

---

* ଶ୍ରୀକୃଷ୍ଣ ମାୟାଶବରୀ ( ପାର୍ବତୀ ) ରୂପରେ ମୁଗ୍ଧହୋଇ ପଶ୍ଚାଦ୍‌ଗାମୀ ହୋଇଥିଲେ ସୁଦ୍ଧା ଶବରୀଠାରୁ ମୟୂରପୁଚ୍ଛ ପ୍ରାପ୍ତି ନିମନ୍ତେ ପଶ୍ଚାଦ୍ଧାବିତ ହୋଇଥିବାର ଶିବଙ୍କ ନିକଟରେ କପଟୋକ୍ତି ପ୍ରକାଶ କରିଥିଲେ ।

+ ସମୁଦ୍ର ମନ୍ଥନ ସମୟରେ ବିଷ୍ଣୁ ମୋହିନୀ ମୂର୍ତ୍ତି ଧାରଣ କରି ଅମୃତ ବଣ୍ଟନ କରିଥିବାବେଳେ

ବାରେ କର ସ୍ମରଣ । ୫୨

'ହର ! ତୁମ୍ଭେ ଡଙ୍କି ବୋଲଅ
ଚତୁର୍ଦ୍ଦଶ ଜଗତେ
'ହସାଉଣ ଥିଲ ଶୂଳୀଙ୍କି
ଦେବାସୁର ଅଗ୍ରତେ । ୫୩

'ପ୍ରକାଶିଲ ଏହୁ ଚାତୁର
ତୁମ୍ଭ ଚାତୁରୀ ବୁଦ୍ଧି
'କଳାନ୍ତର ସତ୍ତ୍ୱ ସେବୁଣ
ଅଛ ଦେଲଟି ସୁଦ୍ଧି" । ୫୪

'ମାହେଶ୍ୱରୀ-ଶକ୍ତି ବୈଷ୍ଣବୀ —
—ଶକ୍ତି ଉଭୟ ଏକା
'ଏହା ଘୁଞ୍ଚିଥିଲେ ଏସନ
ହୋଇ ନଥାନ୍ତ ଭେକା । ୫୫

'ଯାଉଥାଉ ନାହିଁ ଏଣିକି
ଅଉ ବେଶ୍ୟଧର ହେ
'ପର ମର୍ଯ୍ୟାଦାକୁ ଜଗିଲେ
ନିଜ ମର୍ଯ୍ୟାଦା ରହେ" । ୫୬

ଶୁଣି ଲକ୍ଷ୍ମୀ ଲଭ ବିଗୁଣେ
ପ୍ରଭୁ ଶ୍ରୀଧାବଲ୍ଲଭ
ମୁଖ ହେଲ କ୍ଷୀଣ ପ୍ରଭାତ —

ଶିବ ମୋହିନୀ ମୂର୍ତ୍ତିକୁ ଦେଖି ପ୍ରେମାସକ୍ତ ହୋଇଥିବା ଭବିଷ୍ୟ ପୁରାଣରେ ଅନୁସନ୍ଧେୟ ।

— ଚନ୍ଦ୍ର ପ୍ରାଏ କର୍ପୂର । ୫୭

ହରଷେ ଶଶାଙ୍କ ମଣ୍ଡଳୀ
ସଙ୍ଗେ ଘେନ ପାଙ୍ଗି
କଲେ ତ୍ରିପୃଧାମ କୈଳାସ
ଟିର ଅଢ଼ୁକୁ ଗଢ । ୫୮

—※ ୦ ※—

ସମାପ୍ତ ।

# ରାସରହସ୍ୟ ।

— ✲:୦:✲ —

## ଶ୍ରୀକୃଷ୍ଣ କାମୁକ କି ନା ?

ଭାରତବର୍ଷ ମଧ୍ୟରେ ଆର୍ଯ୍ୟସନ୍ତାନମାନେ ଯେଉଁ ଶ୍ରୀକୃଷ୍ଣଙ୍କୁ ବିଷ୍ଣୁଙ୍କର ଅବତାର ବୋଲି ଭକ୍ତି ତଦ୍ଗତ ଚିତ୍ତରେ ସେବା ପୂଜା କରି ଆସୁ ଅଛନ୍ତି, ସେହି ଶ୍ରୀକୃଷ୍ଣ କିପରି ଚରିତ୍ରବାନ୍ ଥିଲେ ତାହା ଆଲୋଚନା କରିବାକୁ ଯାଇ କେହି୨ ତାହାଙ୍କର ଚରିତ୍ର ଉପରେ ନାନାପ୍ରକାର କଳଙ୍କାରୋପଣ କରି ସେ ଲମ୍ପଟ ଥିବାର ପ୍ରତିପନ୍ନ କରି ଅଛନ୍ତି, କେହି୨ ଶ୍ରୀକୃଷ୍ଣ ଜିତେନ୍ଦ୍ରିୟ, ବିଶୁଦ୍ଧଚରିତ୍ର ଥିବାର ପ୍ରତିପନ୍ନ କରି ଅଛନ୍ତି, ଉପରୋକ୍ତ ଭାବମାନଙ୍କ ମଧ୍ୟରୁ ଅବଶ୍ୟ ଗୋଟିଏ ଯେ ଶାସ୍ତ୍ରାନୁମୋଦିତ ହେବ, ଏଥିରେ କୌଣସି ସନ୍ଦେହ ନାହିଁ, କିନ୍ତୁ ଉପରୋକ୍ତ ଉଭୟ ଭାବରୁ କେଉଁଟି ସତ୍ୟ ମୂଳକ ତାହା ଆଲୋଚନା କରାଯାଇ ଅପରାପର ଭାବମାନ ଲୋକମାନଙ୍କ ହୃଦୟରୁ ପରିତ୍ୟାଗ କରିବା ବିଧେୟ ।

କେହି୨ ଶ୍ରୀକୃଷ୍ଣଙ୍କୁ ଆଦର୍ଶ ମନୁଷ୍ୟ, କେହି୨ ବା ବିଷ୍ଣୁଙ୍କ ଅବତାର ବୋଲି ବର୍ଣ୍ଣନା କରି ଅଛନ୍ତି, ଏହିପରି ଶ୍ରୀକୃଷ୍ଣଙ୍କର ଗୋଟିଏ୨ ବିଷୟ ନେଇ ଯେତେ-

ପ୍ରକାର ମତଭେଦ ହେବାର ଦେଖାଯାଏ ସେ ସମସ୍ତ ଆଲୋଚନା କରିବାକୁ ଯିବା ବହୁ ସମୟ ସାପେକ୍ଷ, ବର୍ତ୍ତମାନ ସେହି ସବୁ ଆଲୋଚନା କରିବା ମଧ୍ୟ ଆମ୍ଭମାନଙ୍କର ଉଦ୍ଦେଶ୍ୟ ନୁହେ, ଶ୍ରୀକୃଷ୍ଣ ବିଶୁଦ୍ଧଚରିତ୍ର କିବା ଲମ୍ପଟ, ତାହାହିଁ ଆଲୋଚନା କରିବା ଆମ୍ଭମାନଙ୍କର ପ୍ରଧାନତମ ଉଦ୍ଦେଶ, ସୁତରାଂ ସେହି ବିଷୟ ଏଠାରେ ଆଲୋଚନାକରା ଯାଉଅଛି।

ଶ୍ରୀକୃଷ୍ଣ ବାଲ୍ୟାବସ୍ଥାରେ ଅରଣ୍ୟବାସିନୀ ବ୍ରଜ ଗୋପିକାମାନଙ୍କ ସହିତରେ ବାସ କରୁଥିବା ହେତୁ କେହି୨ ଶ୍ରୀକୃଷ୍ଣ ନଷ୍ଟଚରିତ୍ର ଥିବାର ଅନୁମାନକରନ୍ତି, ମାତ୍ର ଏହି ଅନୁମାନ ଯେ ନିତାନ୍ତ ଭ୍ରମାତ୍ମକ ବୋଲି ସ୍ୱୀକାର କରାଯାଇନପାରେ, ବର୍ତ୍ତମାନ ବନଚାରିଣୀ ରମଣୀମାନଙ୍କସହିତ ତଦ୍ଦେଶୀୟ ପୁରୁଷମାନେ ହସ୍ତପରସ୍ପରଧର ହୋଇ ଯେପରି ନୃତ୍ୟ କରିଥାନ୍ତି ସେହିପରି ଗୋପୀମାନଙ୍କ ସହିତ ଅପରିଣତବୟସ୍କ ସୁକୁମାର ଶ୍ରୀକୃଷ୍ଣ ନୃତ୍ୟ ଗୀତ କରିଥିଲେ ; ସେହି ସମୟରେ ତାହାଙ୍କର ଅଗ୍ରଜ ବଳରାମ ତାହାଙ୍କ ସଙ୍ଗରେ ଥିଲେ, ଯଥା

"ସହିତଃ ରେମେଣ ଯଥୁର ଃ ଶୀତଳ ଲଳିତଂ ପ୍ରିୟଂ
ଜଗୌ କଳପଦଂ ଶୌରି ର୍ନାନା ତନ୍ତ୍ରୀ କୃତ ବ୍ରତଃ"
(ବିଷ୍ଣୁ ପୁରାଣ ପଞ୍ଚମାଂଶ ତ୍ରୟୋଦଶ ଅଧ୍ୟାୟ ଶ୍ଳୋ ୧୬ ଦ୍ର)

ଟୀକା — ଇଦାନୀଂ ସ୍ୱସୋଦ୍ୱିବାର୍ଥଂ ଗୋପୀଃ ସମୀ

ଲସନ୍ କଣାଦଧ୍ୱାନ ସହିତ୍ୱମେଣେତ କଳପଦଂ ଅବ୍ୟକ୍ତ ମଧୁରାକ୍ଷରଂ ଶ୍ରୀମତଃ କୃଷ୍ଣନାମ. ପ୍ରକାଶେନ ଗୋକୁଳେ କୃତଂ ବ୍ରତଂ ସ୍ଥିର ନିୟମୋଦ୍ୟେନ ସ୍ୱଃ ଇତ୍ୟବାଦିତ୍ ଏବ ବୋଦ୍ଧବ୍ୟମିତି କୃତସଙ୍କେତ ଇତ୍ୟର୍ଥଃ, ତାରମନ୍ଦ୍ର କୃତନ୍ୟମ ମିତପାଠେ ତାରମନ୍ଦ୍ରାଭ୍ୟାଂ ଧ୍ୱନିଭ୍ୟାଂ କୃତଃ ନିନ୍ୟଃ ଯଥୋକ୍ତପ୍ରକାପରତ୍ରା ବା ଯସ ଗାନ ଇତ୍ୟର୍ଥଃ ॥ ଅନେକ ପାଠାନ୍ତରାଣି ବିସ୍ତର ଭୟାତ୍ ଉପେକ୍ଷ୍ୟାନ ।

ଅର୍ଥ— କୃଷ୍ଣ ବଳଦେବଙ୍କର ସଙ୍କେତ ସେହି ରାସ-ସ୍ଥଳୀରେ ଅତି ଲଳିତ ଓ ମନୋହର ଅବ୍ୟକ୍ତ ମଧୁର ଧ୍ୱନିଯୁକ୍ତକରି ଗାନକଲେ ।

କେହି କୌଣସି ପାପକାର୍ଯ୍ୟରେ ପ୍ରବୃତ୍ତହେଲେ ସେ ତାହାର ଗୁରୁଜନ ମାନଙ୍କର ସମ୍ମୁଖରେ ସ୍ୱୀୟ ଅଭିଳାଷ ପୂର୍ଣ୍ଣକରି ନେବାକୁ ପଶ୍ଚାତ୍ପଦ ହୋଇଥାଏ ଏଣୁକେ ଯେ ବଳରାମ ଶ୍ରୀକୃଷ୍ଣଙ୍କର ପରମ ଗୁରୁଜନ, ଜ୍ୟେଷ୍ଠବୋଲି ଶ୍ରୀକୃଷ୍ଣ ଯାହାଙ୍କୁ ପିତୃତୁଲ୍ୟ ସମ୍ମାନ କରୁଥିଲେ, ସେହି ବଳରାମ ସଙ୍ଗରେଥିବା ସମୟରେ ଶ୍ରୀକୃଷ୍ଣ ଯେ କୁଳସମ୍ମାନ, ଚକ୍ଷୁ-ଲଜ୍ଜା ପରିତ୍ୟାଗକରି ଗୋପୀମାନଙ୍କ ସଙ୍ଗରେ ଅବୈଧ ଶୃଙ୍ଗାର ରସର ଅଭିନୟ କରୁଥିଲେ ଏହା କୌଣସି ପ୍ରକାର ବିଶ୍ୱାସ ଯୋଗ୍ୟନୁହେ ।

ଶ୍ରୀକୃଷ୍ଣ କୌଣସି୨ ସମୟରେ ଯେଉଁ ଦୁଷ୍କର୍ମମାନ କରିଥିଲେ ସେ ସକାଶେ ସେ ଯଥେଷ୍ଟ ପରିମାଣରେ

ତିରସ୍କୃତ ହୋଇଥିବାର ପ୍ରମାଣ ମିଳୁଅଛି । ବସ୍ତ୍ରହର-ଲୀଳା ସମ୍ବନ୍ଧେ ସେ କୌଣସି ଅବୈଧ କର୍ମ କରିଥିବା ଏବଂ ସେହେତୁ ତିରସ୍କୃତ ହୋଇଥିବାର କୌଣସି ପ୍ରମାଣ ନାହିଁ ।

ସାଧାରଣତଃ ଲୋକେ କଥାକେ କଥାକେ ଶ୍ରୀକୃଷ୍ଣଙ୍କୁ ଇନ୍ଦ୍ରିୟାସକ୍ତ କାମୁକ ବୋଲି କହିଥାନ୍ତି, ମାତ୍ର ଯେ ଶ୍ରୀକୃଷ୍ଣ ଷୋଡ଼ଶ ସହସ୍ର ବ୍ରଜବାଳାମାନଙ୍କ ମଧ୍ୟରେ ବିଳାସିତାର ଚୂଡ଼ାନ୍ତ ଦୃଷ୍ଟାନ୍ତ ପ୍ରଦର୍ଶନ କରି ମଧ୍ୟ ହତଶୁକ୍ର ଅର୍ଥାତ୍ ରେତଧାତୁ ରକ୍ଷାରେ ଅସମର୍ଥ ହୋଇ ନଥିଲେ ସେହି ଶ୍ରୀକୃଷ୍ଣଙ୍କୁ ଊର୍ଦ୍ଧ୍ୱରେତା ନ ବୋଲି ତାଙ୍କର ନିଷ୍କଳଙ୍କ ଚରିତ୍ରୋପରି କଳଙ୍କାରୋପ କରିବା କି ବିବେଚନାର କାର୍ଯ୍ୟ ?

ଭାଗବତରେ ଉଲ୍ଲେଖ ଅଛି ;

"ରେମେ ତୟା ଚାତ୍ମରତ ଆତ୍ମାରାମୋପ୍ୟଖଣ୍ଡିତଃ
କାମିନାଂ ଦର୍ଶୟନ୍ ଦୈନ୍ୟଂ ସ୍ତ୍ରୀଣାଂ ଚୈବ ଦୁରାତ୍ମତାଂ
ଇତ୍ୟେବ ଦର୍ଶୟନ୍ତ୍ୟସ୍ତାଶ୍ଚେରୁର୍ଗୋପ୍ୟୋ ବିଚେତସଃ ।
ଯାଂ ଗୋପୀମନୟତ୍ କୃଷ୍ଣୋ ବିହାୟାନ୍ୟାଃ ସ୍ତ୍ରିୟୋ ବନେ ।୩୦
ସା ଚ ମେନେ ତଦାତ୍ମାନଂ ବରିଷ୍ଠଂ ସର୍ବଯୋଷିତାଂ ॥
ହିତ୍ୱା ଗୋପୀଃ କାମଯାନା ମାମସୌ ଭଜତେ ପ୍ରିୟଃ ।
ତତୋ ଗତ୍ୱା ବନୋଦ୍ଦେଶଂ ଦୃପ୍ତା କେଶବମବ୍ରବୀତ୍ ।

ନପାରଯେହଂ ଚଲିତୁଂ ନୟମାଂ ଯତ୍ରତେ ମନଃ । ୩୮
ଏବ ମୁକ୍ତଃ ପ୍ରିୟା ମାହ ସ୍କନ୍ଧ ମାରୁହ୍ୟତା ମିତି ।
ତତଶ୍ଚାନ୍ତର୍ଦ୍ଧଧେ କୃଷ୍ଣଃ ସାବଧୂ ରନ୍ୱତପ୍ୟତ । ୩୬ ।
(ଭାଗବତ ୧୦ ମ ସ୍କନ୍ଧ ।)

ଅର୍ଥ — ସ୍ୱତଃପରିତୃପ୍ତ ଏବଂ ସ୍ୱକ୍ରୀଡ଼ ଓ ନାସ୍ତି ବିଭ୍ରମରେ ଅନାକୃଷ୍ଟ ହୋଇ ମଧ୍ୟ କାମୀମାନଙ୍କର ଦୈନ୍ୟ ଏବଂ ଅବଳା ମାନଙ୍କର ଦୁରାତ୍ମତା ଜନମନେ କେଳି କରିଥିଲେ ।

ଏହି ପ୍ରକାର ପୂର୍ବ ପରିଚ୍ଛେଦ୍ର ଗୋପୀଗଣ ହତବିବେକ ହୋଇ ପଦ ଚିହ୍ନ ସକଳ ଦେଖାଉଥିଲେ, ଅନନ୍ତର ଅନ୍ୟାନ୍ୟ ଗୋପୀମାନଙ୍କୁ ପରିତ୍ୟାଗ କରି ଶ୍ରୀକୃଷ୍ଣ ଯାହାକୁ ନିର୍ଜ୍ଜନକୁ ଆନୟନ କରିଥିଲେ ତତ୍କାଳେ ସେହି କୃଷ୍ଣପ୍ରିୟା ଗୋପୀ ଆପଣାକୁ ଯାବତୀୟ ଯୋଷାମଧ୍ୟରେ ଶ୍ରେଷ୍ଠ ବୋଲି ମନେକରିଥିଲେ । ଏହି ଯେଉଁ ସକଳ ଗୋପୀଙ୍କର ଇଚ୍ଛା କେବଳ ବନ ଗମନ ସାଧନ ସେହି ସମସ୍ତ ଗୋପୀମାନଙ୍କୁ ପରିତ୍ୟାଗ କରି କେବଳ ମୋତେ ଭଜୁଅଛନ୍ତି, ଅତଏବ ସେହି ଗୋପୀ ବନ ପ୍ରଦେଶରେ ଉପନୀତ ହୋଇ ସଙ୍ଗରେ ଏହିପ୍ରକାର କହିଥିଲେ "ହେ ପ୍ରିୟତମ ! ମୁଁ ଆଉ ଚାଲି ପାରିବି ନାହିଁ, ତୁମ୍ଭର ଯେଉଁଠାରେ ଇଚ୍ଛା ଆମ୍ଭଙ୍କୁ ବହନ କରି ଗମନ କର" ଏହିପ୍ରକାର ଉକ୍ତିରେ କାମୀ ମାନଙ୍କର

ଦୈନ୍ୟ ପ୍ରକାଶ କରନ୍ତି ଭଗବାନ କହିଲେ ତେବେ ମୋହର ସ୍କନ୍ଧରେ ଅରୋହଣ କର, କିନ୍ତୁ ସେହି ଗୋପୀ ସ୍କନ୍ଧରେ ଆରୋହଣାର୍ଥ ଉଦ୍ୟତ ହେବା ମାତ୍ରେ ଶ୍ରୀକୃଷ୍ଣ ଅନ୍ତର୍ହିତ ହେଲେ ।

ଉପରୋକ୍ତ ଶ୍ଳୋକରୁ ଶ୍ରୀକୃଷ୍ଣ କାମାସକ୍ତ ବୋଲି ଥିବାର କିଛିମାତ୍ର ପ୍ରକାଶ ପାଉନାହିଁ ବରଂ ଶ୍ରୀକୃଷ୍ଣ ଅତି ସାଧୁଚରିତ୍ର ଥିବାର ଜଣାଯାଉଅଛି । କାରଣ ଶ୍ରୀକୃଷ୍ଣ ବାସ୍ତବରେ ଯଦି କାମୁକ ହୋଇଥାନ୍ତେ ତେବେ ପ୍ରିୟତମା ରାଧିକାଙ୍କ ନିକଟରେ ସ୍କନ୍ଧରେ ବହନ-କରି ନେବାର ସ୍ୱୀକାର କରି ବୃନ୍ଦାବତୀ ଆରୋହଣ-ଉଦ୍‌ଯୋଗ ସମୟରେ ଅନ୍ତର୍ହିତ ହୋଇନଥାନ୍ତେ । ଶ୍ରୀକୃଷ୍ଣ ଆପଣା ସ୍କନ୍ଧରେ ଆରୋହଣ ନିମନ୍ତେ ରାଧିକାଙ୍କୁ ଯେ ଅନୁମତି ଦେଇଥିଲେ ତାହା ଅହଙ୍କାର ଭ୍ରମରୀ ବ୍ରଜ ସୁନ୍ଦରୀଙ୍କର ମନ ବଢ଼ିବା ଛଡ଼ା ଅପର କିଛି ଉଦ୍ଦେଶ୍ୟ ଅଛି ବୋଲି ଆମ୍ଭମାନଙ୍କର ବିଶ୍ୱାସ ହୁଏ ନାହିଁ, ଆଉ ଶ୍ରୀଧରସ୍ୱାମୀଙ୍କର ଟୀକାରେ ମଧ୍ୟ ଉଲ୍ଲେଖ ଅଛି ଯେ "କାମିନାଂ ଦୈନ୍ୟଂ ଦର୍ଶୟତି" ଅର୍ଥାତ୍ କାମୀମାନଙ୍କର ଦୈନ୍ୟ ପ୍ରକାଶ କରନ୍ତି । କାମୀମାନେ ଆପଣାର ପ୍ରେୟ-ସୀଠାରେ ଯେପରି ଦୈନ୍ୟ ଦେଖାଇ ଥାନ୍ତି, ସେହି-ପ୍ରକାର ମନ ଜାଣିବାକୁ ସ୍ଥାନ ଓ କାର୍ଯ୍ୟ ବିବେଚନାରେ ଶ୍ରୀକୃଷ୍ଣଙ୍କୁ ସେହି ପଥ ଅବଲମ୍ବନ କରିବାକୁ ପଡ଼ିଥିଲା । ଅନ୍ୟଥା ସେ କାମାସକ୍ତ ହୋଇ ଉପରୋକ୍ତ ପ୍ରକାର

କାର୍ଯ୍ୟ କର ନାହାନ୍ତି । କାରଣ କାମାସକ୍ତ ଲୋକ ମଦଗର୍ବିତା ରମଣୀକୁ ପରିତ୍ୟାଗ କରିବା ସାଧାରଣତଃ ସମ୍ଭାବ୍ୟ ନୁହେ , ଫଳତଃ ଶ୍ରୀକୃଷ୍ଣ ଗୋପକାମିନୀ ମାନଙ୍କ ସଙ୍ଗରେ ବ୍ୟଭିଚାର ପ୍ରେମରେ ଆବଦ୍ଧ ନ ଥିଲେ ଏହାହିଁ ପ୍ରମାଣିତ ହେଉଅଛି ।

ଶ୍ରୀକୃଷ୍ଣ ବ୍ରଜଗୋପିକା ମାନଙ୍କର ସ୍ନେହ ଭକ୍ତି ସଦାଚରଣରେ ପରିତୁଷ୍ଟ ଥିଲେ ସତ୍ୟ, ମାତ୍ର ସେମାନଙ୍କର ଗର୍ବିତ ଭାବ ଦେଖି ତଦଣ୍ଡରେ ଅନ୍ତର୍ହିତ କରି ସେହି ଅନୁତାପ ଦଣ୍ଡରେ ଦଣ୍ଡିତ କରୁଥିଲେ । ଫଳତଃ ଶ୍ରୀକୃଷ୍ଣ ବିଶୁଦ୍ଧ ପ୍ରେମର ବଶୀଭୂତ ଥିଲେ ଏବଂ ଅବୈଧ ଇନ୍ଦ୍ରିୟ ସୁଖାଭିଳାଷରେ ଆଦରପାଣିତ ପ୍ରକ୍ରିୟାର ସୀମା ସ୍ପର୍ଶ କରୁ ନ ଥିଲେ । ଶ୍ରୀକୃଷ୍ଣ କାମରିପୁକୁ ସମ୍ପୂର୍ଣ୍ଣ ପରାଭୂତ କରି ଲୋକ ପୁଞ୍ଜକୁ ପବିତ୍ରଭାବ ଅତୁଳ୍ଯଳ ରୂପେ ଶିକ୍ଷା ପ୍ରଦାନ କରୁଥିଲେ , ଭାଗବତରେ ୧୦ ମ ସ୍କନ୍ଦ ୩୩ ଅଧ୍ୟାୟ ୩୯ ଶ୍ଳୋକରେ ବର୍ଣ୍ଣିତ ଅଛି ,

"ବିକ୍ରୀଡ଼ିତଂ ବ୍ରଜବଧୂଭିରିଦଞ୍ଚ ବିଷ୍ଣୋଃ
ଶ୍ରଦ୍ଧାନ୍ୱିତୋଽନୁଶୃଣୁୟାଦଥ ବର୍ଣ୍ଣୟେଦ୍ଯଃ —
ଭକ୍ତିଂ ପରାଂ ଭଗବତି ପ୍ରତିଲଭ୍ୟ କାମଂ ,
ହୃଦ୍ରୋଗମାଶ୍ୱପହିନୋତ୍ୟଚିରେଣ ଧୀରଃ ।"

ଅର୍ଥାତ୍ ବ୍ରଜବଧୂ ମାନଙ୍କ ସହିତ ଶ୍ରୀକୃଷ୍ଣ ରାସକ୍ରୀଡ଼ା କରିଥିବା ବିଷୟ ଯେଉଁମାନେ ଶ୍ରଦ୍ଧାନ୍ୱିତ ହୃଦୟରେ

ଶ୍ରବଣ ଅଥବା ବର୍ତ୍ତନ କରନ୍ତ ସେ ପରମଭକ୍ତି ଲାଭ- କର ହୃଦୟର ରୋଗରୂପ କାମକୁ ଅଚରେ ନଷ୍ଟ କରନ୍ତ ; ଅର୍ଥାତ୍ ରାସଲୀଳା ଶ୍ରବଣରେ ଲୋକ ନିଷ୍କାମ ହୁଏ ।

ଶ୍ରୀକୃଷ୍ଣ ବାସ୍ତବରେ ଯେବେ କାମୁକ, ତେବେ ତାଙ୍କର ବିଷୟ ଶ୍ରବଣରେ ଓ ବର୍ଣ୍ଣନରେ, ଲୋକ ନିଷ୍କାମ ହେବାର କି ପ୍ରକାର ସମ୍ଭବ କରାଯାଇପାରେ ? ସାଧୁ ପୁରୁଷ ମାନଙ୍କ ଚରିତ ଆଲୋଚନା କଲେ ଏବଂ ସେମାନଙ୍କ ଚରିତ ଶ୍ରବଣ ଓ ବର୍ତ୍ତନକଲେ ମନରେ ପବିତ୍ରତା ଜାତହୁଏ, ମନରେ ଜାତହେଲେ କାମରିପୁ ପରାଭୂତ ହୁଏ । ଯେତେବେଳେ କୃଷ୍ଣଲୀଳା ଶ୍ରବଣ ଓ ବର୍ଣ୍ଣନରେ କାମରିପୁ ପରାଭୂତ ହେବାର ସ୍ୱୀକାର କରିବାକୁ ହେଉଅଛି ତେତେବେଳେ କୃଷ୍ଣଙ୍କୁ କାମବି- ଜୟୀ ସାଧୁ ପୁରୁଷ ବୋଲିନଯାଇ ଅନ୍ୟ କଣ ବୋଲା- ଯିବ ? ସୁତରାଂ ପ୍ରମାଣିତ ହେଉଅଛି ଯେ ଶ୍ରୀକୃଷ୍ଣ କାମାସକ୍ତ ନଥାଇ ନିଷ୍କାମ ଥିଲେ । ରାସକ୍ରୀଡ଼ା ର ଏକୋନବିଂଶ ଅଧ୍ୟାୟର ପ୍ରଥମରେ ଶ୍ରୀଧରସ୍ୱାମି ଯେଉଁ ଅବତାରଣା କରିଅଛନ୍ତି ତାହାର ଅନୁବାଦ ନିମ୍ନରେ ଉଲ୍ଲେଖ କରୁଅଛୁଁ ।

"ଊନବିଂଶେତୁ ରାସାର୍ଥମୁକ୍ତିପ୍ରବୃକ୍ତସ୍ୟୋ ହରେଃ
ଗୋପୀଭିରାସଙ୍ଗରଭେ ତସ୍ୟ ଗ୍ରନ୍ଥାର୍ତ୍ଥି କୌତୁକଂ,
ବ୍ରହ୍ମାଦି ଜୟ ସଂରୂଢ଼ ଦର୍ପ କନ୍ଦର୍ପ ଦର୍ପହା

ଜୟତି ଶ୍ରୀପତି ର୍ଗୋପୀ-ରାସ-ମଣ୍ଡଳ-ମଣ୍ଡିତଃ ”

“ଟୀକା — ନନୁ ବିପରୀତ ମିଦଂ — ପରଦାର ବିନୋଦେନ କନ୍ଦର୍ପଜେତୃତ୍ୱପ୍ରତୀତେଃ, ନୈବ ଯୋଗ-ମାୟାମୁପାଶ୍ରିତଃ ଆତ୍ମାରାମୋପ୍ୟରୀରମତ୍, ସାକ୍ଷା-ନ୍ମନ୍ମଥମନ୍ମଥଃ । ଆତ୍ମନ୍ୟବରୁଦ୍ଧସୌରତଃ ଇତ୍ୟାଦି ସ୍ୱାତନ୍ତ୍ର୍ୟାଭିଧାନାତ୍ ତସ୍ମାଦ୍ରାସକ୍ରୀଡ଼ା ବିଡ଼ମ୍ବନଂ କାମ ଜୟାଖ୍ୟାପନାୟୈବ ତତ୍ତ୍ୱଂ। କିଞ୍ଚ ଶୃଙ୍ଗାରକଥୋପଦେଶେନ ବିଶେଷତୋ ନିବୃତ୍ତିପରେୟଂ ପଞ୍ଚାଧ୍ୟାୟୀତି ବ୍ୟକ୍ତୀ କରିଷ୍ୟାମଃ — ।୦।

“ ଊନବିଂଶ ଅଧ୍ୟାୟରେ ରାସକ୍ରୀଡ଼ା ନିମନ୍ତେ ଶ୍ରୀକୃଷ୍ଣଙ୍କର ଉକ୍ତି ପ୍ରଯୁକ୍ତି ସବୁ ବର୍ଣ୍ଣିତ ହେବ ଏବ ରାସକ୍ରୀଡ଼ା ଆରମ୍ଭ ସମୟରେ ଭଗବାନଙ୍କର ଅନ୍ତର୍ଦ୍ଧାନ କୌତୁକ ମଧ୍ୟ ବର୍ଣ୍ଣିତ ହେବ ।

“ ବ୍ରହ୍ମାଦି ମାନଙ୍କର ଜୟ ବିଷୟରେ ଗର୍ବବାନ କନ୍ଦର୍ପ ଦର୍ପକୁ ନାଶ କରି ଅନନ୍ତ ଗୋପୀଗଣ ବେଷ୍ଟିତ ରାସ ମଣ୍ଡଳ ମଣ୍ଡନ ସ୍ୱରୂପ ଶ୍ରୀକୃଷ୍ଣ ଜୟ ଯୁକ୍ତ ହୋଇଅଛନ୍ତି ।

“ କୃଷ୍ଣଙ୍କର ପରଦାର ବିନୋଦନ ଦ୍ୱାରା କନ୍ଦର୍ପା-ଧୀନତା ସୂଚିତ ହେଉନାହିଁ ଯେହେତୁ ଯୋଗମାୟାକୁ ଆଶ୍ରୟ କରି ଅଛନ୍ତି’ ‘ଆତ୍ମାରେ ସର୍ବଦା ଆନନ୍ଦିତ ଅର୍ଥାତ୍ ଯୋଗୀ ’ ‘ସାକ୍ଷାତ୍ କନ୍ଦର୍ପର ମନ ମନ୍ଥନ-କାରୀ ’ ‘ଆପଣାଠାରେ ସୌରତକୁ ଅବରୁଦ୍ଧ କରି-

ଅକ୍ରନ୍ତ ଇତ୍ୟାଦ ପଦ ମାନଙ୍କରେ କୃଷ୍ଣଙ୍କର ସ୍ୱାତନ୍ତ୍ର୍ୟ କଥନ ହେତୁରୁ କନ୍ଦର୍ପାଧୀନତା ସୂଚିତ ହେବାକୁ ନାହିଁ । ପରନ୍ତୁ ଏଥିରୁ ବର୍ଣ୍ଣନୀୟ ରାସକ୍ରୀଡ଼ା ବିଡମ୍ବନ କୃଷ୍ଣଙ୍କର ଜିତେନ୍ଦ୍ରିୟତ୍ୱର ଆଖ୍ୟାପନ କନିତ ହୋଇ– ଅଛି ଏବଂ ଶୃଙ୍ଗାର କଥା ଛଳରେ ବିଶେଷରେ ନିବୃତ୍ତି ଅର୍ଥାତ୍ ବୈରାଗ୍ୟ ସମ୍ପାଦକ ଏହି ପଞ୍ଚାଧ୍ୟାୟୀ ।"

ଏହି ବ୍ୟାଖ୍ୟାରେ ଯେ ଶ୍ଲୋକ ଗୁଡ଼ିକର ଅପେକ୍ଷା କରାଯାଉଅଛି ତାହା ନିମ୍ନରେ ଉଦ୍ଧୃତ କରାଗଲା ।

ଭଗବାନପି ତା ରାତ୍ରୀଃ ଶାରଦୋତ୍ଫୁଲ୍ଲ ମଲ୍ଲିକାଃ
ବୀକ୍ଷ୍ୟ ରନ୍ତୁଂ ମନଶ୍ଚକ୍ରେ ଯୋଗମାୟା ମୁପାଶ୍ରିତଃ ।

ଭଗବାନ ଷଡ଼ୈଶ୍ୱର୍ଯ୍ୟ ପରିପୂର୍ଣ୍ଣ ହୋଇ ମଧ୍ୟ ବସ୍ତ୍ରହରଣ କାଳୀନ ଯେ ପ୍ରତିଶ୍ରୁତ ଅର୍ଥାତ୍ ଗୋପ କାମିନୀ ମାନଙ୍କ ନିକଟରେ ଯେ ଅଙ୍ଗୀକାର କରିଥିଲେ ( ହେ ଅବଳା ଗଣ ! ତୁମ୍ଭେମାନେ ସିଦ୍ଧ ହୋଇଅଛ ବର୍ତ୍ତମାନ ବ୍ରଜକୁ ଗମନକର ଆଗାମୀ ରଜନୀରେ ସମସ୍ତେ ଆମ୍ଭର ସହିତ କ୍ରୀଡ଼ା କରିବାକୁ ପାଇବ ) ସେହି ସକଳ ରଜନୀ ଶରତ୍ ଉତ୍ଫୁଲ୍ଲ ମଲ୍ଲିକା ସୁଶୋ– ଭିତ ଅବଲୋକନ କରି ଯୋଗମାୟା ଅବଲମ୍ବନ ପୂର୍ବକ କ୍ରୀଡ଼ା କରିବାକୁ ମନସ୍ଥ କରିଥିଲେ ।

ଉପରୋକ୍ତ ଶ୍ଲୋକରୁ ଜଣା ଯାଉଅଛି ଯେ ପ୍ରଥ– ମତଃ ଗୋପୀମାନେ ସିଦ୍ଧହୋଇ ଅକ୍ରନ୍ତ ବ୍ରଜ ନା, ଅର୍ଥାତ୍

ଗୋପାଙ୍ଗନା ମାନଙ୍କର ମନରେ କୁଭାବ ପୋଷଣ ହେଉ ନଥିଲା ଏହାଦେଖି ପରେ ସ୍ୱୀୟ ଉତ୍ସବରେ ଶ୍ରୀକୃଷ୍ଣ ପ୍ରୟାସୀ ହୋଇଅଛନ୍ତି, ବିଶେଷତଃ ରାସ-କ୍ରୀଡ଼ା ସମ୍ବନ୍ଧରେ ଯୋଗମାୟା ଅବଲମ୍ବନ ପୂର୍ବକ କ୍ରୀଡ଼ା କରିବାକୁ ମନସ୍ଥ କରିଥିଲେ, ଏପରସ୍ଥଳେ ରାସକ୍ରୀଡ଼ା କୁଭାବ ପୋଷଣ ନିମନ୍ତେ ଯେ ଶ୍ରୀକୃଷ୍ଣ କରୁଥିଲେ ଏପରି ବୁଝାଯାଇ ପାରେନାହିଁ, ଶୁକ-ଦେବ କହିଅଛନ୍ତି, —

"ଇତି ବିକ୍ଳବିତଂ ତାସାଂ ଶ୍ରୁତ୍ୱା ଯୋଗେଶ୍ୱରେଶ୍ୱରଃ
ପ୍ରହସ୍ୟ ସଦୟଂ ଗୋପୀରାତ୍ମାରାମୋ ଽପ୍ୟରୀରମତ୍"
ଭାଗବତ ୧୦ ସ୍କଃ ୨୯ ଅ ୩୯ ଶ୍ଳୋକ,

ଯୋଗେଶ୍ୱର ମାନଙ୍କର ଈଶ୍ୱର ଭଗବାନ ଶ୍ରୀକୃଷ୍ଣ ସ୍ୱୟଂ ଆତ୍ମାରାମ * ତଥାପି ସମାଗତ ଗୋପୀମାନଙ୍କର ଏପ୍ରକାର କାତର୍ଯ୍ୟବାକ୍ୟ ଓ ବିଳାପ ଶ୍ରବଣ କରି ସଦୟ ହେଲେ, ଏବଂ ସହାସରେ କ୍ରୀଡ଼ା କଲେ, ଗୋପୀ-ମାନଙ୍କର ମନୋରକ୍ଷା ଏହି ରାସଲୀଳା କରିବାର ଏକମାତ୍ର କାରଣ ବୋଲି ବୁଝାଯାଏ। ଯେଉଁ ଗୋପୀମାନେ ଶ୍ରୀକୃଷ୍ଣଙ୍କର ବାଲ୍ୟ ସଙ୍ଗିନୀ, ସେମାନଙ୍କର ମନୋ-ରକ୍ଷା ନିର୍ଦ୍ଦୋଷ ଭାବରେ କରିବା ଅନ୍ୟାୟ ନୁହେଁ।

" ତାସାମାବିରଭୂଚ୍ଛୌରିଃ ସ୍ମୟମାନ ମୁଖାମ୍ବୁଜଃ

---

* ଆତ୍ମାରାମଃ = "ଜ୍ଞାନାସ୍ତୁ ଯତମାନେ ଯୋଗିନ" ବାଚସ୍ପତି

ପୀତାମ୍ବର ଧରଃ ସ୍ରଗ୍ବୀ ସାକ୍ଷାନ୍ମନ୍ମଥ ମନ୍ମଥଃ ।" ।

ଅର୍ଥ— ଭକ୍ତବତ୍ସଳ ଭଗବାନ ଶୌରି ବନମାଳ ଦ୍ୱାରା ଅଲଂକୃତ ହୋଇ ସ୍ମିତ ବଦନରେ ସେମାନଙ୍କର ସମକ୍ଷରେ ଏପରି ଆବିର୍ଭୂତ ହେଲେଯେ ଦେଖିବାମାତ୍ରେ ବୋଧହେଲା ଏ ଜଗନ୍ମୋହନ କାମଦେବଙ୍କର ମନୋମଧ୍ୟରେ ଉତ୍ପନ୍ନ ଯେ କାମ ତାହାର ସାକ୍ଷାତ୍ ମୋହଜନକ ।

ମନକୁ ଯେ ମନ୍ଥନକରେ ସେ ମନ୍ମଥ, ମନ୍ମଥର ମନୋମଥନକାରୀ ନାମ ମନ୍ମଥ ମନ୍ମଥ ଅର୍ଥାତ୍ ଲୋକମାନଙ୍କର ମନକୁ ମନ୍ଥନ କରେ ଯେ ମଦନ ତାହାର ମନ ମନ୍ଥନ କ ମୋହକାରକ ହେତୁ ଶ୍ରୀକୃଷ୍ଣଙ୍କୁ ମନ୍ମଥ ମନ୍ମଥ ବୋଲାଯାଇଅଛି ଶ୍ରୀଧର ସ୍ୱାମି ଯେ ଟୀକା ଦେଇଅଛନ୍ତି ସେହି ଟୀକାର ଅଭିପ୍ରାୟ ମଧ୍ୟ ଏହି ପ୍ରକାର ଅଟେ ।

ଏବଂ ଶଶାଙ୍କାଂ ସୁବିରାଜିତା ନିଶାଃ
ସସତ୍ୟ କାମୋ ଽନୁରତାବଲାଗଣଃ
ସିଷେବ ଆତ୍ମନ୍ୟବରୁଦ୍ଧ ସୌରତଃ
ସର୍ବାଃଶରତ୍ କାବ୍ୟ କଥାରସାଶ୍ରୟାଃ ।
ଭାଃ ୧୦ ସ୍କଃ ୩୩ ଅଃ ୨୬ ଶ୍ଳୋକ

ଅର୍ଥ—ସତ୍ୟ ସଙ୍କଳ୍ପ ଏବଂ ଅନୁରାଗିଣୀ ସ୍ତ୍ରୀବର୍ଗପରିବୃତ ଶ୍ରୀକୃଷ୍ଣ ସମସ୍ତ ରଜନୀ ରାସ କରନ୍ତି ସେହି ସକଳ ନିଶାର ବର୍ଣ୍ଣନା କ କରନ୍ତି ତତ୍ସମୁଦାୟ ନିଶା—

କରକରରେ ବଗ୍ଧକତ ଅତଏବ ଶରତ୍‌କାଳୀନ ଅଥଚ କାବ୍ୟ କଥ୍ୟମାନ ଯେ ସକଳ ରସ, ସେହି ସମସ୍ତର ଆଶ୍ରୟ ପରନ୍ତୁ ଭଗବାନ ଏରୂପ ଯୁବତୀ ବୃନ୍ଦସହ କେଳିକଲେ ମଧ୍ୟ ତାହାଙ୍କର ଚରମ ଧାତୁ (ଶୁକ୍ର) ଅବରୁଦ୍ଧ ଥିଲା, ସ୍ଖଳିତ ହୋଇନାହିଁ ।

ଏହି ଶ୍ଳୋକର "ଆତ୍ମନ୍ୟବରୁଦ୍ଧ ସୌରତଃ" ଏହା ମୀମାଂସା କରିବାକୁ ଗଲେ ଦେଖାଯାଏ ଯେ ଶ୍ରୀଧର-ସ୍ୱାମୀ ତାଙ୍କର ଟିକାରେ "ଆତ୍ମନ୍ୟବରୁଦ୍ଧ ସୌରତଃ ଚରମ ଧାତୁଃ ନ ତ୍ୱସ୍ଖଳତ୍ତୋ ଯସ୍ୟେତକାମ ଇତ୍ୟୁକ୍ତି" ଉଲ୍ଲେଖ କରି ଅଛନ୍ତି । ଏସ୍ଥଳେ ଶ୍ରୀକୃଷ୍ଣ ଙ୍କପର ବିଶୁଦ୍ଧ ସ୍ୱଭାବଥିଲେ ତାହା ଅତ୍ୟୁନ୍ଦରରୂପେ ପ୍ରମା-ଣିତ ହେଉଅଛି ।

ଭାଗବତର ୩ ଯ ସ୍କନ୍ଦରେ ଉଲ୍ଲେଖ ଅଛି,

"ତତୋ ନନ୍ଦ ବ୍ରଜମିତଃ ପିତ୍ରା କଂସାଦ୍ବିଭ୍ୟତା
ଏକାଦଶସମାସ୍ତତ୍ର ଗୂଢ଼ାର୍ଚ୍ଚିଃ ସବଲୋଽବସତ୍ !"

ଦ୍ୱିତୀୟ ଅଧ୍ୟାୟ ୨୬ ଶ୍ଳୋକ

ଟୀକା — ତତ୍‌କୃଷ୍ଣସ୍ୟ ଜନ୍ମାନନ୍ତରଂ ପିତ୍ରା ହେତୁ ଭୂତେନନନ୍ଦସ୍ୟ ବ୍ରଜଂ ଇତଃ ଗତଃ । ତତ୍ର ବ୍ରଜେ ଏକାଦଶସମାଃ ସମ୍ବତ୍ସରାନ୍ ଗୂଢ଼ାର୍ଚ୍ଚି ଗୂଢ଼ ତେଜାଃ ସବଲୋ ବଳଦେବେନସହ ବର୍ତ୍ତମାନଃ ସନ୍ ଅବସତ୍ ପ୍ରଚ୍ଛନ୍ନବାସ କୃଷ୍ଣ ଇତି ଶେଷଃ —

ଅର୍ଥାତ୍ — ଶ୍ରୀକୃଷ୍ଣଙ୍କର ପିତା କଂସଦ୍ୱାରା ଭୀତ-

ହୋଇ ଶ୍ରୀକୃଷ୍ଣଙ୍କୁ ନନ୍ଦ ଗୃହରେ ରଖି ଆସିଲେ, ଶ୍ରୀକୃଷ୍ଣ ବଳରାମଙ୍କ ସଙ୍ଗରେ ଏକାଦଶ ବର୍ଷ ପର୍ଯ୍ୟନ୍ତ କଂସର ଅଲକ୍ଷିତ ଭାବରେ ବାସ କରୁଥିଲେ ।

ରାସକ୍ରୀଡ଼ା ସମୟରେ ଯେ ଶ୍ରୀକୃଷ୍ଣଙ୍କର ବୟସ କେବଳ ମାତ୍ର ଏକାଦଶ ବର୍ଷ ଥିଲା, ସେହି ଶ୍ରୀକୃଷ୍ଣ ଏକାଦଶ ବର୍ଷ ସମୟରେ ଯେ ଗୋପୀମାନଙ୍କ ସନ୍ନି-ଧରେ ଅବୈଧ ପ୍ରଣୟରେ ଆସକ୍ତ ହୋଇଥିଲେ ଏହା କୌଣସିମତେ ସମ୍ଭବ ନୁହେ ।

ପୁନଶ୍ଚ ଦେଖା ଯାଉ ଶ୍ରୀକୃଷ୍ଣଙ୍କର ବିଶୁଦ୍ଧ ଚରିତ୍ରତା ନିଷ୍କାମତା ଓ ସାଂସାରିକ ବୈଲକ୍ଷଣତା ସମ୍ବନ୍ଧରେ ସେହି ଭାଗବତ ଗ୍ରନ୍ଥକାର କିପରି ଉଲ୍ଲେଖ କରି ଅଛନ୍ତି,—

"ଉଦ୍ଦାମ ଭାବ ପିଶୁନାମଳ ବଲ୍ଗୁହାସ
ବ୍ରୀଡ଼ାବଲୋକନିହତୋଽମଦନୋଽପି ଯାସାଂ
ସଂମୁହ୍ୟ ଚାପମଜହାତ୍ ପ୍ରମଦୋତ୍ତମାସ୍ତା
ଯସ୍ୟେନ୍ଦ୍ରିୟଂ ବିମଥିତୁଂ କୁହକୈର୍ନଶେକୁଃ ॥"

୧୦ ମ ସ୍କ, ୧୧ ଅ, ଶ୍ଳୋକଃ ୩୬

ଟୀକା — ନନ୍ୱେବଂ ସ୍ତ୍ରୀସଙ୍ଗାତ୍ ସଂସାରିତ୍ୱ ପ୍ରତୀତେଃ କଥଂ ଭଗବାନାବତୀର୍ଣ୍ଣ ଇତ୍ୟୁଚ୍ୟତେ ତତ୍ରାହ ଉଦ୍ଦାମେତି ଦ୍ୱାଭ୍ୟାଂ ଯାସାଂ ଉଦ୍ଦାମୋ ଗମ୍ଭୀରୋ ଯୋ ଭାବଃ ଅଭିପ୍ରାୟଃ ତସ୍ୟ ପିଶୁନଃ ସୂଚକୋ ଯୋଽମଲୋ ବଲ୍ଗୁଃ ସୁନ୍ଦରୋ ହାସୋ ବ୍ରୀଡ଼ାବଲୋକଶ୍ଚ

ତାଭ୍ୟାଂ ନିହତଃ ଅମଦନଃ ଶ୍ରୀମହାଦେବୋପି ସଂମୁହ୍ୟ ଲକ୍ଷ୍ମ୍ୟା ରୂପଂ ପିନାକଂ ଅତ୍ୟାକ୍ଷୀତ୍ । ଏବ ପ୍ରଭାବାଃ ଯାଃ ସ୍ତ୍ରିୟଃ ଇତ୍ୟେତାବଦ୍ଧିବକ୍ଷିତଂ ଯଦ୍ବା ଭଗବତା ମୋହିନୀ ରୂପେଣ ମହେଶୋଽପି ବିମୋହିତ ଏବ ଏତାଶ୍ଚ ତାଦୃଗ୍ ବିଳାସା ଏବେତି ତଥୋକ୍ତାଃ ତାଃ କୁହକୈଃ କପଟୈର୍ବିଭ୍ରମୈର୍ଯସ୍ୟେନ୍ଦ୍ରିୟଂ ମନଃବିମଥିତୁଂ କ୍ଷୋଭ-ୟିତୁଂ ନଶକ୍ତାଃ ॥ ପୁନଶ୍ଚ କ୍ରମ ସନ୍ଦର୍ଭ ଟୀକାରେ ଉଲ୍ଲେଖ ଅଛି , —

ତସ୍ମାତ୍ ପ୍ରେମ ମାହେଥାପ୍ତି ବିକାରୈଶ୍ଚାଦସ୍ୟ କାମୁକ ବୈଲକ୍ଷଣ୍ୟ ମିତି ଭାବଃ ॥

ଅର୍ଥ— ଶ୍ରୀକୃଷ୍ଣ ସାଂସାରିକ ବିଷୟାସକ୍ତ ମନୁଷ୍ୟ ମାନଙ୍କ ସଦୃଶ ସ୍ତ୍ରୀପରତନ୍ତ୍ର ନଥିଲେ । ଯଦ୍ୟପି ସ୍ତ୍ରୀଗଣ ଅତ୍ୟନ୍ତ ପ୍ରଭାବଶାଳିନୀ ସତ୍ୟ , ତଥାପି ସେମାନଙ୍କର ଗମ୍ଭୀର ଅଭିପ୍ରାୟ ସୂଚକ ସୁନ୍ଦର ହାସ୍ୟ ଏବଂ ସଲଜ୍ଜ ଅବଲୋକନ ଦ୍ୱାରା ଆହତ ହୋଇ ମହାଦେବ ମଧ୍ୟ ମୋହ ବଶତଃ ଆପଣାର ଧନୁ ପରିତ୍ୟାଗ କରିଥିଲେ କିନ୍ତୁ ସେମାନେ ଆପଣାର ବିଭ୍ରମାଦି ଶୃଙ୍ଗାର ଚେଷ୍ଟା ଦ୍ୱାରା ତାହାଙ୍କର ( ଶ୍ରୀକୃଷ୍ଣ ) ମନକୁ କ୍ଷୁବ୍ଧ କରିବାକୁ ସମର୍ଥ ହୋଇ ନଥିଲେ ।

ଶ୍ରୀକୃଷ୍ଣ ଯେଦିନ ରାସୋତ୍ସବ ଆରମ୍ଭ କଲେ ସେଦିନ ବ୍ରଜବାଳା ମାନେ ରାସରେ ଶ୍ରୀକୃଷ୍ଣଙ୍କର ନିକଟସ୍ଥ ହେବାରୁ ସେମାନେ କି ଉଦ୍ଦେଶ୍ୟରେ ଆସିଥିଲେ ,

ସେମାନଙ୍କର ମନର ପବିତ୍ରତା ପରୀକ୍ଷା ନିମିତ୍ତ ସେମାନଙ୍କ ପ୍ରତି ଶ୍ରୀକୃଷ୍ଣ କେତେଗୁଡ଼ିଏ କଥା କହିଥିଲେ ସେହି ସକଳ ଉକ୍ତି ପ୍ରତି ଦୃଷ୍ଟିଦେଲେ ଶ୍ରୀକୃଷ୍ଣ ଅନାସକ୍ତ ଭାବରେ ସେମାନଙ୍କ ପ୍ରତି ବାକ୍ୟ ପ୍ରୟୋଗ କରିଥିବା ଏବଂ ଗୋପୀମାନେ ବ୍ୟଭିଚାର ପ୍ରେମ ଲାଳସାରେ ଶ୍ରୀକୃଷ୍ଣଙ୍କର ସମୀପକୁ ନଆସି ଅଧାର୍ମିକ ପ୍ରେମ ଅର୍ଥାତ୍ ଅପରସାଶ୍ରୟ ନିସ୍ପୃହ ପ୍ରେମରେ ଶ୍ରୀକୃଷ୍ଣଙ୍କର ସେବା ନିମନ୍ତେ ଆଗମନ କରିଥିବାର ଅତି ସୁନ୍ଦର ରୂପେ ପ୍ରମାଣିତ ହେଉଅଛି, ସେ ସମ୍ବନ୍ଧରେ ଭାଗବତରେ ଯାହା ଉଲ୍ଲେଖ ଅଛି ତାହା ସାଧାରଣଙ୍କ ବୋଧ ସୌକାର୍ଯ୍ୟାର୍ଥେ ଓ ପାଠକ ମାନଙ୍କର କୌତୁହଳ ନିବୃତ୍ତି ନିମନ୍ତେ ଏଠାରେ ଉଦ୍ଧୃତ କରି ଦିଆଯାଉଅଛି ଗୋପୀମାନେ ଶ୍ରୀକୃଷ୍ଣଙ୍କ ସମୀପରେ ଉପସ୍ଥିତ ହେବାରୁ ଶ୍ରୀକୃଷ୍ଣ ଗୋପୀମାନଙ୍କୁ ସମ୍ଭାଷଣ କରି କହିଲେ, —

ସ୍ୱାଗତଂ ବୋ ମହାଭାଗାଃ ପ୍ରିୟଂ କିଂ କରବାଣି ବଃ
ବ୍ରଜସ୍ୟାନାମୟଂ କଚ୍ଚିଦ୍ ବ୍ରୂତାଗମନକାରଣଂ ।

ଭାଗବତ ୧୦ ସ୍କ: ୨୯ ଅ: ୧୭ ଶ୍ଳୋକ

ଅର୍ଥ — ହେ ମହାଭାଗା ବ୍ରଜରମଣୀଗଣ, ତୁମ୍ଭମାନଙ୍କର ସୁଖରେ ଆଗମନ ହେଲା ? ମୁଁ ତୁମ୍ଭମାନଙ୍କର କି ପ୍ରିୟକାର୍ଯ୍ୟ କରିବି ସମସ୍ତେ ସମ୍ଭ୍ରମରେ ଆସିଅଛ, ଦେଖି ଭୟ ହେଉଅଛି, ବ୍ରଜର କୁଶଳତ ? ଆଗମନର କାରଣ କଣ କହ ।

ରଜନ୍ୟେଷା ଘୋରରୂପା ଘୋରସତ୍ତ୍ୱ ନଷେବତା
ପ୍ରତିଯାତ ବ୍ରଜଂ ନେହସ୍ଥେୟଂ ସ୍ତ୍ରୀଭିଃ ସୁମଧ୍ୟମାଃ ॥
ଭାଗବତ ୧୦ ସ୍କଃ ୨୯ ଅ ୧୮ ଶ୍ଳୋକ

ଅର୍ଥାତ୍ ଏହି ରଜନୀ ଘୋରରୂପା, ବର୍ତ୍ତମାନ ଏଠାରେ ଭୟଙ୍କର ପ୍ରାଣୀ ସକଳ ଭ୍ରମଣ କରୁଅଛନ୍ତି, ଶୀଘ୍ର ବ୍ରଜକୁ ଫେରିଯାଅ ହେ ସୁମଧ୍ୟମା ସୁନ୍ଦରୀଗଣ, ଏସମୟରେ ଏଠାରେ ସ୍ତ୍ରୀଲୋକ ଉପସ୍ଥିତ ହେବାର ଉଚିତ ନୁହେ ।

ଉପରୋକ୍ତ ଶ୍ଳୋକ ସମ୍ବନ୍ଧେ ବକ୍ତବ୍ୟ ଏହିଯେ ବସ୍ତ୍ରହରଣ ସମୟରେ ରାସୋତ୍ସବ କରଣାର୍ଥ ସ୍ଥିରୀକୃତ ହୋଇ ଥିବା ସତ୍ତ୍ୱେ ଶ୍ରୀକୃଷ୍ଣ ଯେବେ କାମେନ୍ଦ୍ରିୟ ପରିତୃପ୍ତ ନିମିତ୍ତ ସେହି ରାସୋତ୍ସବର କଳ୍ପନା କରିଥିଲେ, ତେବେ ଶ୍ରୀକୃଷ୍ଣ ଗୋପୀମାନଙ୍କୁ କି ନିମନ୍ତେ ରାତିରେ ଆସିଲ ବୋଲି ପ୍ରଶ୍ନ କରିବାର ତାତ୍ପର୍ଯ୍ୟ କି ଥିଲା ? ଏବଂ ଗୃହକୁ ଫେରିଯାଅ ଏଠାରେ ସ୍ତ୍ରୀଲୋକ ରହିବା ଉଚିତ ନୁହେ ଏପରି କି ନିମନ୍ତେ କହନ୍ତେ ? ଏହିସବୁ କହିବାରୁ ଅଭ୍ରାନ୍ତ ଓ ଦୃଢ଼ତାର ସହିତ କୁହାଯାଇ ପାରେ ଯେ ଶ୍ରୀକୃଷ୍ଣଙ୍କ ମନରେ କୌଣସି ପ୍ରକାର କୁଭାବ ସ୍ଥାନ ପାଇନାହିଁ ଶ୍ରୀକୃଷ୍ଣ ଗୋପୀମାନଙ୍କୁ ଗୃହକୁ ଫେରିଯିବା ସମ୍ବନ୍ଧେ ଆହୁରି ମଧ୍ୟ କହିଅଛନ୍ତି ଯେ

ମାତରଃ ପିତରଃ ପୁତ୍ରା ଭ୍ରାତରଃ ପତୟଶ୍ଚ ବଃ

ବିଚନ୍ୱନ୍ତ୍ୟପଶ୍ୟନ୍ତୋ ମାକୃଥ୍ୱଂ ବନ୍ଧୁ ସାଧ୍ୱସଂ
ଭାଗବତ ୧୦ ସ୍କ, ୨୯ ଅ: ଶ୍ଳୋ ୧୯ କ

ଅର୍ଥାତ୍ ତୁମ୍ଭମାନଙ୍କର ମାତା ପିତା ଭ୍ରାତା ପତି ଏବ ପୁତ୍ର ତୁମ୍ଭମାନଙ୍କୁ ଦେଖିବାକୁ ନପାଇ ଅନ୍ୱେଷଣ କରୁଥିଲୁ ଅଛନ୍ତି । ବନ୍ଧୁ ବାନ୍ଧବ ମାନଙ୍କର ଭୟ କି ତୁମ୍ଭମାନଙ୍କୁ କରିବାକୁ ହେବନାହିଁ ?

ଦୃଷ୍ଟଂବନଂ କୁସୁମିତଂ ରାକେଶକର ରଞ୍ଜିତଂ
ଯମୁନାନୀଲଲୀଲୈଜ ତରୁପଲ୍ଲବ ଶୋଭିତଂ
୧୦ମ ସ୍କନ୍ଦ ୨୯ ଅ: ୨୦ ଶ୍ଳୋକ

ଗୋପୀମାନଙ୍କର ମୁଖରେ ଶ୍ରୀକୃଷ୍ଣ ପ୍ରଣୟ କୋପର ଈଷତ୍ ସୂଚନା ଦେଖି ପୁନର୍ବାର କହିଲେ ରାକାପତିଙ୍କର ସୁରମ୍ୟ କିରଣ ରଞ୍ଜିତ ଯମୁନାସ୍ପର୍ଶୀ ପବନର ମନ୍ଦ ମନ୍ଦ ସଞ୍ଚରଣ କମ୍ପମାନ ତରୁ ପଲ୍ଲବ ଶୋଭିତ କୁସୁମିତ ବନଭୂମି ଦର୍ଶନ କରନ୍ତେ ଅଛିଅଛ ଦେଖିଲ କି ?

ତଦ୍ୟାତ ମାଚିରଂ ଘୋଷଂ ଶୁଶ୍ରୂଷଧ୍ୱଂ ପତୀନ୍ ସତୀଃ
କ୍ରନ୍ଦନ୍ତି ବତ୍ସ ବାଳାଶ୍ଚ ତାନ୍ ପାଯ଼ୟତ ଦୁହ୍ୟତ
୧୦ ସ୍କ ୨୯ ଅ ଶ୍ଳୋ ୨୨ କ

ଗୋପୀଗଣ ! ବର୍ତ୍ତମାନ ଗୃହକୁ ବ୍ରଜାଭିମୁଖେ ଗମନ କର । ବିଳମ୍ବକରିବା ଉଚିତ ନୁହେ, ସତୀଗଣ ! ଯାଇ ଆପଣାର ପତି ସେବାରେ ନିଯୁକ୍ତ ହୁଅ, ତୁମ୍ଭର ଗୃହରେ ବତ୍ସ ଓ ବାଳକମାନେ ରୋଦନ କରୁ ଅଛନ୍ତି, ସେମା-

ନଙ୍କୁ ଦୁଗ୍ଧପାନ କରାଅ ଏବଂ ଦୁଗ୍ଧାଦି ଦୋହନ କର ।

ଅଥବା ମଦଭିସ୍ନେହାଦ୍ଭବତ୍ୟୋଯନ୍ତ୍ରିତାଶୟାଃ
ଆଗତାହ୍ୟୁପପନ୍ନଂ ତଭ୍ ପ୍ରୀୟନ୍ତେ ମମ ଜନ୍ତବଃ
୧୦ ସ୍କ ୨୯ ଅ ଶ୍ଳୋ ୨୨ କ

ଅଥବା ବୋଧ ହେଉଅଛି ଆମ୍ଭଠାରେ ସ୍ନେହ-ହେତୁ ତୁମ୍ଭେମାନେ ଏପ୍ରକାର ବଶୀଭୂତ ଚିତ୍ତହୋଇ ଏଠାକୁ ଆଗମନ କରି ଅଛ , ସୁନ୍ଦରୀଗଣ ! ଏହା ଉଚିତ ବୋଧ ହେଉଅଛି କାହିଁକି ସକଳ ପ୍ରାଣୀ ମୋହର ପ୍ରତି ପ୍ରୀତି କରିଥାନ୍ତି ।

ଭର୍ତ୍ତୁଃ ଶୁଶ୍ରୂଷଣଂ ସ୍ତ୍ରୀଣାଂ ପରୋ ଧର୍ମୋହ୍ୟମାୟୟା
ତଦ୍ବନ୍ଧୂନାଞ୍ଚ କଲ୍ୟାଣ୍ୟଃ ପ୍ରଜାନାଂଚାନୁପୋଷଣଂ
ଦୁଃଶୀଲୋ ଦୁର୍ଭଗୋ ବୃଦ୍ଧୋ ଜଡ଼ୋ ରୋଗ୍ୟଧନୋଽପିବା
ପତିଃ ସ୍ତ୍ରୀଭିର୍ନହାତବ୍ୟୋ ଲୋକେପ୍ସୁଭିରପାତକୀ
ଭାଗବତ ୧୦ ସ୍କ ୨୯ ଅ ୨୩ ଶ୍ଳୋକ

କିନ୍ତୁ ହେ କଲ୍ୟାଣୀଗଣ ଅକପଟରେ ସ୍ୱାମୀର ଏବଂ ତାହାଙ୍କ ବନ୍ଧୁବର୍ଗର ଶୁଶ୍ରୂଷା ତଥା ପୁତ୍ର କନ୍ୟା ମାନଙ୍କର ଲାଳନ ପାଳନ ସ୍ତ୍ରୀଲୋକ ମାନଙ୍କର ପରମ ଧର୍ମ ଅଟେ , ଯେ ସକଳ ସ୍ତ୍ରୀ ପ୍ରଭୁ ଲୋକ ଅଭିଲାଷ କରନ୍ତି ସେମାନଙ୍କର ଅପାତକୀ ପତି ଦୁଃଶୀଳ ଅଥବା ଦୁର୍ଭଗ କିମ୍ବା ବୃଦ୍ଧ ଅଥବା ଜଡ଼ କିମ୍ବା ରୋଗୀ , ନିର୍ଧନ ଯେ କୌଣସି ଅବସ୍ଥାପନ୍ନ ହେଲେ ମଧ୍ୟ ପରିତ୍ୟାଗ କରିବା କର୍ତ୍ତବ୍ୟ ନୁହେ ।

ଉପରୋକ୍ତ ଶ୍ଳୋକର ଆଲୋଚନାରେ ଶ୍ରୀକୃଷ୍ଣ-ଚରିତ୍ର କି ପ୍ରକାର ନିର୍ମଳ ଓ ଅନୁକରଣୀୟ ତାହା ସୁସ୍ପଷ୍ଟ ରୂପେ ଜଣା ଯାଉଅଛି, ସେ ସାଧୁଭାବରେ ବ୍ରଜବାଳା ମାନଙ୍କୁ କି ପବିତ୍ର ଉପଦେଶ ପ୍ରଦାନ କରି ଅଛନ୍ତି, ସ୍ତ୍ରୀ ଲୋକ ମାନଙ୍କ ପ୍ରତି ଏହା ଅପେକ୍ଷା ସାଧୁଉପଦେଶ ଆଉ କଣ ଦିଆ ଯାଇପାରେ ? ଯେ ଲୋକ ରମଣୀର ରମଣୀୟ କଟାକ୍ଷ ପାତରେ ଜର୍ଜରିତ, ରମଣୀର ସ୍ନେହାଦର ପୂର୍ଣ୍ଣ ବାକ୍ୟ ଜାଲରେ ଯେ ଲୋକ ଆବଦ୍ଧ, ଅହଂକାର ସ୍ୱାର୍ଥ ସମ୍ମାନରେ ଯେଉଁ ବ୍ୟକ୍ତି ଆପଣାକୁ ଭାଗ୍ୟବାନ ମନେକରେ, ଶ୍ରୀକୃଷ୍ଣ ବାସ୍ତବିକ ସେହି ଶ୍ରେଣୀର ମନୁଷ୍ୟ ହୋଇଥିଲେ ସେ ଗୋପୀମାନଙ୍କ ପ୍ରତି ଇଦୃଶ ବ୍ୟବହାର କରିବାର କାରଣ କି ? ସ୍ତ୍ରୀଲୋକ ମାନଙ୍କ ନିକଟରୁ ପରିତ୍ୟାଗ କରିପାରିବା କ୍ଷମତା କି କାମୁକ ଲୋକ ପକ୍ଷରେ ସମ୍ଭବନୀୟ ? ତାହା କେବେହେଁ ନୁହେ ।

ଯଦି ସତ୍ୟ ଶ୍ରୀକୃଷ୍ଣ କି ବାକ୍ୟରେ କି କାର୍ଯ୍ୟରେ ବ୍ରଜବାଳା ମାନଙ୍କ ପ୍ରତି କୌଣସି ପ୍ରକାର ଅସଦା-ଚରଣ କର୍ମ କରି ନାହାନ୍ତି ଯେ ଭାଗବତ ଭାରତୀୟ ପ୍ରତ୍ୟେକ ହିନ୍ଦୁ ଗୃହସ୍ଥର ପରମ ଆଦରଣୀୟ ସାମଗ୍ରୀ, ଯେ ଭାଗବତର ଗୋଟିଏ ୨ ଶ୍ଳୋକ ଧର୍ମପ୍ରାଣ ହିନ୍ଦୁ-ମାନଙ୍କ ନିକଟରେ ଗୋଟିଏ ୨ ରତ୍ନଠାରୁ ମୂଲ୍ୟବାନ ଆମ୍ଭେମାନେ କେବଳ ସେହି ଭାଗବତ ଗ୍ରନ୍ଥରୁ ଶ୍ରୀକୃ-

ଷ୍ଟଙ୍କର ବିଶୁଦ୍ଧ ଭାବର ପରିଚୟ ପାଠକ ମାନଙ୍କ ନିକଟରେ ଉପସ୍ଥାପିତ କରୁଅଛନ୍ତି ଶ୍ରୀକୃଷ୍ଣ କପଟ ପରିହାସ୍ୟାଥିଲେ ତାହା ତାଙ୍କର ଉପଦେଶରୁ ମନରଭାବ ପରିଷ୍କାରରୂପେ ପ୍ରକାଶ ପାଉଅଛି, ଶ୍ରୀକୃଷ୍ଣଙ୍କର ଆଉ ଦୁଇଟି ଗୋଟିଏ ଉକ୍ତି ଏଠାରେ ଉଦ୍ଧୃତକର ଦେଖାଉଅଛୁଁ ।

ଅସ୍ୱର୍ଗ୍ୟମଯଶସ୍ୟଞ୍ଚ ଫଲ୍ଗୁ କୃଚ୍ଛ୍ରଂ ଭୟାବହଂ
ଜୁଗୁପ୍ସିତଞ୍ଚ ସର୍ବତ୍ର ହ୍ୟୌପପତ୍ୟଂ କୁଳସ୍ତ୍ରିୟଃ
ଭାଗବତ ୧୦ ସ୍କ: ୨୯ ଅ: ୨୪ ଶ୍ଳୋକ

କୁଳସ୍ତ୍ରୀ ମାନଙ୍କର ଉପପତି ସଙ୍କ୍ରାନ୍ତସୁଖ ସ୍ୱର୍ଗର ଅହିତକର ଅଯଶର ଜନକ ଏବ ଅତିତୁଚ୍ଛ, ଦୁଃଖ ସମ୍ପାଦକ ଓ ଭୟାବହ ଅତଏବ ଔପପତ୍ୟ ସର୍ବତୋଭାବେ ଗର୍ହିତ ।

ଶ୍ରବଣାଦ୍ଦର୍ଶନାଦ୍ଧ୍ୟାନାନ୍ମୟି ଭାବୋଽନୁକୀର୍ତ୍ତନାତ୍
ନତଥା ସନ୍ନିକର୍ଷେଣ ପ୍ରତିଯାତ ତତୋ ଗୃହାନ୍ ।

ଶ୍ରବଣ, ଦର୍ଶନ, ଧ୍ୟାନ, କୀର୍ତ୍ତନରେ ଯେରୂପ ସହଜରେ ଅମ୍ଭପ୍ରତି ଭାବୋଦୟ ହୁଏ ଆମ୍ଭର ସନ୍ନିକର୍ଷରେ ସେପରି ହୁଏନାହିଁ ।

ଅତଏବ କହୁଅଛନ୍ତି କି ତୁମ୍ଭେମାନେ ଗୃହକୁ ଫେରିଯାଅ, ଶ୍ରୀକୃଷ୍ଣ ଗୋପୀମାନଙ୍କର ପ୍ରତି ପୁନଃ ପୁନଃ ଉପଦେଶ ଦେବାରୁ ଗୋପୀମାନେ ଶ୍ରୀକୃଷ୍ଣଙ୍କର ନିଗ୍ରହାଶଙ୍କାକର ଅଶ୍ରୁପୂର୍ଣ୍ଣ ଲୋଚନରେ ଈଷତ୍

କ୍ରୋଧାବେଶ ହେତୁ ଗଦ୍ଗଦ ବାକ୍ୟରେ ସ୍ତବକରି କହିଲେ ।

ମୈବଂ ବିଭୋଽର୍ହତି ଭବାନ୍ ଗଦିତୁଂ ନୃଶଂସଂ
ସନ୍ତ୍ୟଜ୍ୟ ସର୍ବ ବିଷୟାଂ ସ୍ତବ ପାଦମୂଳଂ
ଭକ୍ତା ଭଜସ୍ୱ ଦୁରବଗ୍ରହ ମା ତ୍ୟଜାସ୍ମାନ୍
ଦେବୋ ଯଥାଦିପୁରୁଷୋ ଭଜତେ ମୁମୁକ୍ଷୂନ୍ । ୬୮

ହେବିଭୋ ! ଏପ୍ରକାର ନିଷ୍ଠୁର ବାକ୍ୟ ପ୍ରୟୋଗ କରିବା ଆପଣଙ୍କର ଉଚିତ ନୁହେ, ଅସ୍ମେମାନେ ସକଳ ବିଷୟ ପରିତ୍ୟାଗ କରି ଆପଣଙ୍କର ପଦସେବା କରୁଅଛୁଁ, ଆପଣ ସ୍ୱତନ୍ତ୍ର ପୁରୁଷ, ଆମ୍ଭମାନଙ୍କୁ ପରିତ୍ୟାଗ ନ କରନ୍ତୁ ଯେପରି ଆଦିପୁରୁଷ ଦେବ, ମୁମୁକ୍ଷୁ ବ୍ୟକ୍ତିମାନଙ୍କୁ ଉପେକ୍ଷା ନକରି ଗ୍ରହଣ କରନ୍ତି । ଆପଣ ସେହିପରି ଆମ୍ଭମାନଙ୍କୁ ପରିତ୍ୟାଗ କରନ୍ତୁ ନାହିଁ ।

ଯତ୍ପତ୍ୟପତ୍ୟ ସୁହୃଦା ମନୁ ବୃତ୍ତିରଙ୍ଗ
ସ୍ତ୍ରୀଣାଂ ସ୍ୱଧର୍ମ ଇତିଧର୍ମ ବିଦା ତ୍ୱୟୋକ୍ତଂ
ଅସ୍ତ୍ୱେବମେ ତଦୁପଦେଶପଦେ ତ୍ୱୟୀଶେ
ପ୍ରେଷ୍ଠୋ ଭବାଂ ସ୍ତନୁଭୃତାଂ କିଲବନ୍ଧୁରାତ୍ମା । ୬୯

ହେ ବିଭୋ ! ଆପଣ ଧର୍ମବେତ୍ତା, ପତି, ପୁତ୍ର, ବନ୍ଧୁ, ବାନ୍ଧବ, ମାନଙ୍କର ଅନୁବୃତ୍ତି କରିବା ସ୍ତ୍ରୀ ଲୋକମାନଙ୍କର ସ୍ୱଧର୍ମବୋଲି ଆପଣ ଯାହା କହିଲେ ତାହା ଆପଣଙ୍କଠାରେ ବର୍ତ୍ତମାନ ହେଉ, କାହିଁକିନା ଆପଣସୁଶ୍ରୂଷଣୀପ୍ରଭୃ ରୂପେ ଉପଦିଶ୍ୟମାନ ପତିପୁତ୍ରାଦିର

ଅଧିଷ୍ଠାନ ତାହାର କାରଣ, ଆପଣ ଈଶ୍ୱର ବ୍ୟତିରେକେ ପତି ପୁତ୍ରାଦି ବସ୍ତୁ-ସମୂହ ନୁହେ । ହେ ଦେବ ଆପଣ ଯେ ଈଶ୍ୱର, ତାହାର ପ୍ରମାଣ ଏହି, ଆପଣ ଦେହଧାରି ମାନଙ୍କର ଆତ୍ମା ଏବଂ ପ୍ରିୟତର ଓ ବନ୍ଧୁ ଅତଏବ ସର୍ବବନ୍ଧୁ କରଣୀୟ ଆପଣଙ୍କଠାରେ ରହୁ ।

କୁର୍ବନ୍ତି ହି ତ୍ୱୟି ରତିଂ କୁଶଳା ସ୍ୱ ଆତ୍ମ
ନ୍ନିତ୍ୟପ୍ରିୟେ ପତିସୁତାଦିଭିରାର୍ତ୍ତିଦୈଃ କିଂ
ତନ୍ନଃ, ପ୍ରସୀଦ ବରଦେଶ୍ୱରମାସ୍ମଛିନ୍ଦ୍ୟା
ଆଶାଂ ଧୃତାଂ ତ୍ୱୟି ଚିରାଦରବିନ୍ଦନେତ୍ର । ୩୦

ହେ ଆତ୍ମନ୍ ! ଶାସ୍ତ୍ର ନିପୁଣ ଜନଗଣ, ନିତ୍ୟପ୍ରିୟ ଆତ୍ମରୂପୀ, ଆପଣଙ୍କଠାରେ ରତି କରିଥାନ୍ତି, ପତି ପୁତ୍ର କେବଳ ପୀଡ଼ାଦାୟକ ସେସବୁ କଅଣ ହେବ ? ଅତଏବ ହେ ବରଦ ! ହେ ଈଶ୍ୱର ! ଆମ୍ଭମାନଙ୍କ ପ୍ରତି ଆପଣ ପ୍ରସନ୍ନ ହେଉନ୍ତୁ, ହେ ଅରବିନ୍ଦ ନେତ୍ର ! ଆମ୍ଭେମାନେ ଚିରକାଳରୁ ଯେ ଆଶା ଧାରଣ କରିଅଛୁଁ, ତାହା ଛେଦନ କରନ୍ତୁନାହିଁ ।

ତନ୍ନପ୍ରସୀଦ ବୃଜିନାର୍ଦ୍ଦନ ତେଽଙ୍ଘ୍ରି ମୂଲଂ
ପ୍ରାପ୍ତା ବିସୃଜ୍ୟ ବସତୀସ୍ତ୍ୱଦୁପାସନାଶାଃ
ତ୍ୱତ୍ ସୁନ୍ଦର ସ୍ମିତ ନିରୀକ୍ଷଣ ତୀବ୍ରକାମ
ତପ୍ତାତ୍ମନାଂ ପୁରୁଷ ଭୂଷଣ ଦେହିଦାସ୍ୟଂ । ୩୫

ହେ ଦୁଖନାଶନ ! ଆମ୍ଭମାନଙ୍କ ପ୍ରତି ପ୍ରସନ୍ନ ହେଉନ୍ତୁ, ଅମ୍ଭେମାନେ ଆପଣଙ୍କର ଉପାସନା କରିବୁଁ ଏହି

ଅଣାକର ଗୃହପରିତ୍ୟାଗ ପୂର୍ବକ ଯୋଗୀମାନଙ୍କ ସଦୃଶ ଆପଣଙ୍କର ପାଦମୂଳ ପ୍ରାପ୍ତହୋଇଅଛୁଁ । ଉପରୋକ୍ତ ଶ୍ଲୋକମାନଙ୍କୁ ଆଲୋଚନାକଲେ ଗୋପାଙ୍ଗନା ମାନଙ୍କର ଉଦ୍ଦେଶ୍ୟ ଏତମହତ୍ତ୍ୱ ଥିବାର ସ୍ପଷ୍ଟ ଜଣା ଯାଉଅଛି । ଗୋପୀମାନେ ଶ୍ରୀକୃଷ୍ଣଙ୍କୁ ଈଶ୍ୱର ଭାବାପନ୍ନ ବୋଲି ଉତ୍ତମରୂପେ ଜାଣିଥିଲେ । ଈଶ୍ୱରଙ୍କ ନିକଟରେ ସ୍ତ୍ରୀ ପୁରୁଷର ଭେଦାଭେଦ ନାହିଁ । ଈଶ୍ୱରଙ୍କର ଅନନ୍ତଶକ୍ତିଶାଳିତା ଗୋପୀମାନେ ହୃଦୟଙ୍ଗମ କରିଥିବା ହେତୁ ବ୍ରଜଗୋପୀକାଗଣ ମାନ ଓ ଲଜ୍ଜା ସକଳ ବିସର୍ଜ୍ଜନ କରି ପ୍ରାଣସମ ପତିପୁତ୍ରମାନଙ୍କୁ ପରିତ୍ୟାଗକରି ଶ୍ରୀକୃଷ୍ଣଙ୍କର ଅଭୟ ପାଦପଦ୍ମର ଆଶ୍ରୟ ଗ୍ରହଣ କରିବା ନିମିତ୍ତ ଆସିଥିଲେ । ବ୍ରଜସୁନ୍ଦରୀ ମାନଙ୍କର ମଧୁର ଭାବାପନ୍ନ ପବିତ୍ର ପ୍ରେମ ଜଗତର ଆଦର୍ଶ ପ୍ରେମଅଟେ । ବିଶୁଦ୍ଧ ପ୍ରେମ ଜଗତରେ ଯାହାକୁ କହନ୍ତି , ସେହି ଆଧ୍ୟାତ୍ମିକ ପ୍ରେମ ସୁକୁମାରୀ ବ୍ରଜଗୋପୀଙ୍କା ମାନଙ୍କର ପ୍ରତି ଲୋମକୂପରେ ରହିଅଛି । କେହି କେହି କହନ୍ତି ଗୋପାଙ୍ଗନାମାନେ ଅବୈଧ ପ୍ରଣୟସିଦ୍ଧି ନିମିତ୍ତ ଶ୍ରୀକୃଷ୍ଣଙ୍କ ନିକଟରେ ଉପସ୍ଥିତ ହୋଇଥିଲେ । ମାତ୍ର କାହିଁ ? ଆମ୍ଭେମାନେ ସାଧାରଣତଃ ଶୁଣିଥାଉଁ ସ୍ତ୍ରୀ ପୁରୁଷ ମାନଙ୍କ ମଧ୍ୟରେ ଅବୈଧ ପ୍ରଣୟ ସମ୍ବନ୍ଧ ସ୍ଥାପିତହେଲେ ତାହା ଅତି ଗୋପନୀୟ ଭାବରେ ନିଷ୍ପନ୍ନ ହୁଏ , ମାତ୍ର ଶ୍ରୀକୃଷ୍ଣଙ୍କ ରାସଲୀଳା ଅବୈଧ

ପ୍ରଣୟସିଦ୍ଧି କମିତ ନୁହେଁ । କାରଣ କି ଶ୍ରୀକୃଷ୍ଣଙ୍କ ନିକଟରୁ କୌଣସି ଗୋପୀ ଏକାକୀ ଯାଇନାହାନ୍ତି ଓ ଷୋଡ଼ଶ ସହସ୍ର ବ୍ରଜବାଳା ଏକତ୍ରେ ଶ୍ରୀକୃଷ୍ଣଙ୍କ ଚରଣାଶ୍ରୟ ପ୍ରାପ୍ତହେବାର ଆଶାରେ ସମାଗତ ହୋଇଥିଲେ । ଶ୍ରୀକୃଷ୍ଣ ବହୁରମଣୀ ବୃନ୍ଦରେ ବେଷ୍ଟିତ ହୋଇ ନର୍ମ-କ୍ରୀଡା ସହିତ ଗୋପାଙ୍ଗନା ମାନଙ୍କ ସଙ୍ଗରେ ଯେ ଅପଣାର କାମୁକତା ପ୍ରକାଶ କରିଥିଲେ ଏହା ସାଧା-ରଣ ବୁଦ୍ଧିକୁ ଅଯେନାହିଁ ।

"ଓଁ ଆତ୍ମରତ୍ୟବିରୋଧେନ" ଇତି ଶାଣ୍ଡିଲ୍ୟଃ

ଶାଣ୍ଡିଲ୍ୟ କହନ୍ତି ଯେତେବେଳେ ମନୁଷ୍ୟ ଏକମାତ୍ର ଆତ୍ମ ରତିବର୍ଦ୍ଧକ ବିଷୟ ସମୂହରେ ରତଥାଏ ତାହାର ବିରୋଧୀ ବିଷୟରେ ଲିପ୍ତ ନଥାଏ ସେତେବେଳେ ତାହାରେ ଭକ୍ତିର ଲକ୍ଷଣ ଦେଖାଯାଏ ଦୃଶ୍ୟ ଦୋଷ-ମାର୍ଜ୍ଜନା ପୁରଃସର ଏକମାତ୍ର ଆତ୍ମ ଚୈତନ୍ୟରେ ଜଗତ୍ ଚୈତନ୍ୟ ବୋଧ କରିବାର ନାମ ଆତ୍ମରତି

ନାରଦସ୍ତୁ, ତଦର୍ପିତାଖିଳାଚାରତା
ତଦ୍ ବିସ୍ମରଣେ ପରମବ୍ୟାକୁଳତେତି
( ନାରଦ ସୂତ୍ର )

ଭଗବାନଙ୍କଠାରେ ସମୁଦାୟ କର୍ମ ଅର୍ପଣକରିବା ଏବଂ ତାହାଙ୍କ ବିସ୍ମରଣରେ ବ୍ୟାକୁଳ ହେବାର ନାମ ଭକ୍ତି । ଯେତେବେଳେ ମନୁଷ୍ୟର ସକଳ ବୃତ୍ତି ଈଶ୍ୱରମୁଖୀ ବା ଈଶାନୁବର୍ତ୍ତିନୀ ହୁଏ ସେତେ-

ବେଳେ ଭକ୍ତିର ପୂର୍ଣ୍ଣ ବିକାଶ ହୁଏ ଅର୍ଥାତ୍ ଯେତେ-ବେଳେ ଜ୍ଞାନାର୍ଜ୍ଜନୀ ବୃତ୍ତି ଗୁଡ଼ିକ ଈଶ୍ବରଙ୍କ ଠାରେ ଅର୍ପିତ ହୁଏ ଶାରୀରିକ ବୃତ୍ତି ଗୁଡ଼ିକ ଈଶ୍ବରଙ୍କ କାର୍ଯ୍ୟ ସାଧନ ବା ଆଜ୍ଞା ପାଳନରେ ନିଯୁକ୍ତ ହୁଏ ତେତେ-ବେଳେ ମନୁଷ୍ୟର ସେହି ଅବସ୍ଥାକୁ ଭକ୍ତି ବୋଲି-ଯାଏ । ବ୍ରଜଗୋପୀକାମାନଙ୍କ ଜୀବନରେ ଯେ ପବିତ୍ର ଭକ୍ତି ଓ ପ୍ରେମର ଲକ୍ଷଣ ପ୍ରକାଶ ପାଇଅଛି ତାହା ଅତି ପବିତ୍ର ଆଧ୍ୟାତ୍ମିକ ଜଗତର ଉଜ୍ଜ୍ୱଳ ଆଦର୍ଶ ସ୍ଥାନୀୟ ପ୍ରେମ ଭକ୍ତି । ମହାତ୍ମ୍ୟ ଜ୍ଞାନ ବ୍ୟତୀତ ଯେ ପ୍ରେମ ତାହାକୁ ବ୍ୟଭିଚାରୀ ପ୍ରେମ କହନ୍ତି । ଗୋପୀକା ମାନ-ଙ୍କର ପ୍ରେମ ଯଦି ସେହି ପ୍ରକାର ହୁଏ ତାହାହେଲେ ପରମ ବିରକ୍ତ ଶୁକଦେବ ସ୍ୱାମୀ ତାଙ୍କୁ କଦାପି ଆଦର କରି ନଥାନ୍ତେ । ଗଙ୍ଗାତୀର ବାସୀ ରାଜା ପରୀକ୍ଷିତ ଆସନ୍ନ ମୃତ୍ୟୁ ଦେଖି ଏହି ବ୍ୟଭିଚାରୀ ପ୍ରେମର କାହାଣୀ ଶୁଣିବାର କି ପ୍ରୟୋଜନ ଥିଲା, ବାସ୍ତବିକ ଶ୍ରୀକୃଷ୍ଣ ଓ ବ୍ରଜଗୋପୀକା ମାନଙ୍କର ଯେ ପ୍ରେମ ତାହା ବ୍ୟଭି-ଚାରୀ ପ୍ରେମ ନୁହେ । ବ୍ୟଭିଚାରୀ ପ୍ରେମ କାମମୂଳକ, ବ୍ୟଭିଚାରିଣୀ ସ୍ତ୍ରୀମାନେ କାମ ପରବଶ ହୋଇ ଅପର ସଙ୍ଗରେ ପ୍ରେମ କରିଥାନ୍ତି, ସେମାନେ ଆପଣାର ସୁଖା-ନ୍ବେଷଣ କରି ପ୍ରେମାସ୍ପଦ ସୁଖରେ ସୁଖୀହୋଇ ପାରନ୍ତି ନାହିଁ । ବ୍ରଜ ଗୋପୀକାଗଣ ଦେବ ଲକ୍ଷଣାକାନ୍ତ ଶ୍ରୀକୃଷ୍ଣଙ୍କର ଅତୁଳନୀୟ ମାହାତ୍ମ୍ୟ ଉତ୍ତମ ରୂପେ

ଅବଗତ ଥିଲେ । ନାରଦ ସୂତ୍ରରେ ଉଲ୍ଲେଖ ଅଛି,

ନତତ୍ରାପି ମହାର୍ମମହାତ୍ମ୍ୟ ଜ୍ଞାନବିସ୍ମୃତ୍ୟପବାଦଃ । ୨୨ ।

ଅର୍ଥାତ୍ ଗୋପୀଗଣ କୃଷ୍ଣଙ୍କର ମହାତ୍ମ୍ୟ ଅବଗତ ଥିଲେ ।

ତଦ୍ ବିହୀନଂ ଜାରାଣାମିବ ।

ମହାତ୍ମ୍ୟ ଜ୍ଞାନ ବ୍ୟତୀତ ଯେ ପ୍ରେମ ତାହା ବ୍ୟଭିଚାରୀ ପ୍ରେମ ଏହା ପୂର୍ବରେ ଉଲ୍ଲେଖ କରା ଯାଇଅଛି । ଭକ୍ତ ଚୂଡାମଣି ଗୌରାଙ୍ଗ ସ୍ୱୀୟ ପରିବାର ତ୍ୟାଗକରି ଯେ ଗୋପୀ ୨ ବୋଲି ଭ୍ରମଣ କରୁଥିଲେ ସେହି ଦେବାଂଶ ସମ୍ଭୂତା ବ୍ରଜ ସୁନ୍ଦରୀ ମାନଙ୍କ ପ୍ରେମ କେବେ କି ବ୍ୟଭିଚାରୀ ପ୍ରେମ ହୋଇପାରେ ? ପ୍ରେମ ତିନି ପ୍ରକାର, ଯଥା ସାଧାରଣୀ, ସାମଞ୍ଜସା ଓ ସାମର୍ଥ୍ୟା । ତୁମ୍ଭେ ମର କ୍ଷତି ନାହିଁ ଆମ୍ଭମାନଙ୍କ ସୁଖର ଉପାୟ କରିଦିଅ ଏହାକୁ ସାଧାରଣ ପ୍ରେମ କହନ୍ତି, ମୁଁ ସୁଖରେ ଥାଏ ଏବଂ ତୁମ୍ଭେ ସୁଖରେ ଥାଅ ଏହାକୁ ସାମଞ୍ଜସା ପ୍ରେମ କହନ୍ତି । ଆମ୍ଭେମାନେ ମଲୁ କ୍ଷତିନାହିଁ ତୁମ୍ଭେ ସୁଖରେ ଥାଅ ଏହାକୁ ସାମର୍ଥ୍ୟା ପ୍ରେମ କହନ୍ତି ଏହି ତ୍ରିବିଧ ପ୍ରେମ ମଧ୍ୟରୁ ଶ୍ରେଷ୍ଠୋକ୍ତ ସାମର୍ଥ୍ୟା ପ୍ରେମ ବ୍ରଜବାଳା ମାନଙ୍କର ଜୀବନରେ ପ୍ରତିଫଳିତ ହୋଇ ଅଛି ।

ଏଥିଉତ୍ତାରୁ ଶ୍ରୀକୃଷ୍ଣ ଓ ଗୋପୀମାନଙ୍କ ପ୍ରେମକୁ ଯଦି ବ୍ୟଭିଚାରୀ ପ୍ରେମ ବୋଲି କେହି କହେ ,

ତାହାହେଲେ ଆମ୍ଭେମାନେ ନିରୁତ୍ତର; କିନ୍ତୁ ଶାସ୍ତ୍ର ଓ ଯୁକ୍ତି ଏତଦୁଭୟରେ ନିର୍ଭର କରି ଆମ୍ଭେମାନେ ଯେତେଦୂର ଜାଣୁ ଶ୍ରୀକୃଷ୍ଣଙ୍କର ପ୍ରେମ ଅତି ପବିତ୍ର ଅଟେ ; ଅଥଚ ଭାଗବତରେ ଉଲ୍ଲେଖ ଅଛି ଶ୍ରୀକୃଷ୍ଣ ବ୍ରଜଗୋପୀକା ମାନଙ୍କ ସଙ୍ଗେ ରାସୋତ୍ସବରେ ପ୍ରବୃତ୍ତ ଥିବାବେଳେ ସ୍ୱର୍ଗର ଦେବତାଗଣ ଦୁନ୍ଦୁଭି ବାଦ୍ୟ ଓ ପୁଷ୍ପବୃଷ୍ଟି କରିଥିଲେ ; ଶ୍ରୀକୃଷ୍ଣଙ୍କର ଅବୈଧ ପ୍ରଣୟସମୟରେ ଦେବତା ମାନଙ୍କର ପୁଷ୍ପବୃଷ୍ଟି ବର୍ଣ୍ଣନା କରିବାର ପ୍ରୟୋଜନ କି ? ଶ୍ରୀକୃଷ୍ଣ ବାସ୍ତବିକ ଯେବେ ଗୋପୀମାନଙ୍କ ସଙ୍ଗେ ଅସଦ୍ଭାବ ପୋଷଣ କରିଓ ରାସୋତ୍ସବ କରୁଥିଲେ, ତାହାହେଲେ ଶ୍ରୀକୃଷ୍ଣ ଅବୈଧ କର୍ମରେ ଆସକ୍ତଥିବା ସମୟେ ଦେବତା ମାନଙ୍କର ଦୁନ୍ଦୁଭି ବାଦ୍ୟ ଓ ପୁଷ୍ପବୃଷ୍ଟି ଇତ୍ୟାଦି ବର୍ଣ୍ଣନା ନ୍ୟାୟାନୁମୋଦିତ ନୁହେ । ମହାତ୍ମା ବ୍ୟାସ ଶ୍ରୀକୃଷ୍ଣଙ୍କର ଚରିତ୍ର ଯେତେସ୍ଥାନରେ ବର୍ଣ୍ଣନ କରି ଅଛନ୍ତି ତାହା ଆଲୋଚନା କଲେ ସ୍ପଷ୍ଟ ଜଣାଯାଏ ଯେ ଶ୍ରୀକୃଷ୍ଣଙ୍କର ଚରିତ୍ର ଅତି ପବିତ୍ର ଅଟେ । ତେବେ ସେହି ପବିତ୍ର ବର୍ଣ୍ଣନା ମଧ୍ୟରେ ସ୍ଥାନେ ୨ ଅଶ୍ଳୀଳ କଳଙ୍କାରୋପ ହୋଇ ଥିବାର ଦେଖାଯାଏ ତାହା ବ୍ୟାସଙ୍କ ର ଲେଖନୀ ପ୍ରସୂତ କି ନା ଏ ବିଷୟରେ ସନ୍ଦେହ ଉପସ୍ଥିତ ହୁଏ ; ସେ ବିଷୟ ବାହୁଲ୍ୟ ଭୟରେ ଆଲୋଚନା କରାଗଲା ନାହିଁ ।

ଗୋପୀମାନେ ଶ୍ରୀକୃଷ୍ଣଙ୍କର ପବିତ୍ର ପ୍ରେମରେ ନିମଗ୍ନ ରହି ରାସ ମଣ୍ଡଳରେ ଶ୍ରୀକୃଷ୍ଣଙ୍କର ଗୁଣ କୀର୍ତ୍ତନ କରି ନୃତ୍ୟ କରୁଥିଲେ; ସେମାନଙ୍କର କଣ୍ଠୋପୂଳ ଚୁମ୍ବିକୁନ୍ତଳ-ଅଳକାଳଙ୍କୃତ କପୋଳ ସ୍ୱେଦ ପରିପୂର୍ଣ୍ଣ କେଶ ଓ କୁସୁମମାଳା ବିସ୍ତସ୍ତ; ବଳୟ ନୂପୁର ଏବଂ କିଙ୍କିଣୀ ଧ୍ୱନିତ ହେଉଥିଲା ; ଯେପରି ବାଳକ ଆପଣାର ପ୍ରତିବିମ୍ବ ସହିତ କ୍ରୀଡ଼ା କରେ ଶ୍ରୀକୃଷ୍ଣ ସେହିପରି ଭାବରେ ବ୍ରଜ ଗୋପୀକା ମାନଙ୍କ ସହିତ କ୍ରୀଡ଼ା କରୁଥିଲେ, ଶ୍ରୀକୃଷ୍ଣଙ୍କୁ ପଞ୍ଚପ୍ରକାର ସାଧାରଣତଃ ଉପାସନା କରା ଯାଇଥାଏ,

ତନ୍ମଧ୍ୟରୁ ୧ — ଶାନ୍ତ ଭାବରେ ଶୁକ ଓ ନାରଦ ୨ — ସଖ୍ୟ ଭାବରେ ବ୍ରଜଗୋପାଳଗଣ ୩ — ଦାସ୍ୟ ଭାବରେ ହନୁମାନ ପ୍ରଭୃତି, ୪ - ବାତ୍ସଲ୍ୟ ଭାବରେ ନନ୍ଦ ଯଶୋଦା ପ୍ରଭୃତି, ୫ — ମାଧୁର୍ଯ୍ୟ ଭାବରେ ବ୍ରଜଗୋପିକାଗଣ ଶ୍ରୀକୃଷ୍ଣଙ୍କର ଉପାସନା କରିଥିଲେ, ଏହି ମଧୁର ପ୍ରେମରେ ଗୋପାଙ୍ଗନା ମାନେ ଐଶୀଶକ୍ତି ସମ୍ପନ୍ନ ଶ୍ରୀକୃଷ୍ଣଙ୍କ ସହିତ କ୍ରୀଡ଼ାକରୁ୍ ଶ୍ରୀକୃଷ୍ଣଙ୍କର ଅଙ୍ଗସ୍ପର୍ଶ ହେତୁ ଗୋପୀକା ମାନଙ୍କର କୁନ୍ତଳ ଦୁକୂଳ, ସ୍ତନାବରଣ, କଞ୍ଚୁଳିକା, ଶ୍ଳଥହୋଇ ପଡ଼ିଥିଲା, ଏବଂ ସେମାନଙ୍କର ମାଲ୍ୟ ଅଳଙ୍କାର ସକଳ ମଧ୍ୟ ଦେହରୁ ଚ୍ୟୁତହୋଇ ପଡ଼ିଥିଲା, ଫଳତଃ ଅବୈଧ ରମଣ କିମ୍ବା ଦ୍ୱାରା ଗୋପାଙ୍ଗନା ମାନଙ୍କର ଶରୀରରେ

ବିକାରଜାତ ହୋଇ ନଥିଲା ବମ୍ବା ଶ୍ରୀକୃଷ୍ଣ ଅବୈଧ ପ୍ରେମରେ ଆଶକ୍ତ ନଥିଲେ । ଏସ୍ଥଳେ କେହି୨ କହି ପାରନ୍ତି ଯେ ଶ୍ରୀକୃଷ୍ଣ ଗୋପୀମାନଙ୍କ ସଙ୍ଗରେଯଦି ଅବୈଧପ୍ରଣୟ କାର୍ଯ୍ୟ ସମ୍ପନ୍ନ କରିଥିବାର ମିଥ୍ୟାହୁଏ ତାହାହେଲେ ଶ୍ରୀକୃଷ୍ଣଙ୍କର ଗୋପୀଜନ ବଲ୍ଲଭ ଏପରି ଗୋଟିଏ ନାମ ଥିବାର କାରଣ କି ? ଏହାର ଉତ୍ତର ଏହି ସାଧାରଣ ଗୋପୀଜନବଲ୍ଲଭ ଏହି ନାମଟି ଯେପରି ଭାବରେ ବ୍ୟବହାର କରନ୍ତି, ତାହାର ଅର୍ଥଟିକ୍ ତଦ୍ ବିପରୀତ ଅଟେ, ସାଧାରଣଙ୍କ ବୋଧଗମ୍ୟ ସକାଶେ ପ୍ରମାଣସହ ଏଠାରେ ବୁଝାଇ ଦିଆ ଯାଉଅଛି ।

ଗୋପୀଜନ ବଲ୍ଲଭ ଜ୍ଞାନେନ ତଜ୍ଜ୍ଞାତଂ ଭବତି ।

ଗୋପାଳ ତାପିନୀ ।

ଗୋପୀଜନେତି ଇଦଂ ସକଳଂ ଜଗତ୍ ନାମରୂପାଭ୍ୟାଂ ଗୋପାୟ୍ତ ରକ୍ଷତି ଅଥବା ପରଂ ପୁମାସଂ ପରଂବ୍ରହ୍ମ ସ୍ୱରୂପଂ ଗୋପାୟତି ସମ୍ବୃଣୋତୀତି ବ୍ୟୁତ୍ପତ୍ୟା ଗୋପୀ ପ୍ରକୃତ୍ୟର୍ମାତ୍ମା ତସ୍ୟାଃ ସକାଶାଜ୍ଜାତାଃ ପ୍ରପଞ୍ଚଃ ଗୋପୀଜନାଃ ତସ୍ୟବଲ୍ଲଭଃ ସ୍ୱାମୀ ଈଶ୍ୱରଃ ଉତ୍ପାଦନପାଳନ ସଂହରଣାଂ ଧାନଂ ଚରାଚରଅଧିଷ୍ଠାନତ୍ୱାତ୍ ତଦ୍ବିଜ୍ଞାନେନ ତତ୍ ଅଖିଳଂ ବିଶ୍ୱଂ ବିଜ୍ଞାତଂ ଭବତି ।

ଅର୍ଥ — ଗୋପୀଜନ ବଲ୍ଲଭ ଏହିଶବ୍ଦର ଅର୍ଥ ଜଣାଯାଉଅଛି ଯେ ଗୋପୀ ଅର୍ଥାତ୍ ଯେ ଏହି ପରି-

ଦୃଶ୍ୟମାନ ଜଗତକୁ ନାମରୂପ ଦ୍ୱାରା ରକ୍ଷା କରି ଅଛନ୍ତି ଅଥବା ଯେ ପରମ ପୁରୁଷ ପରମବ୍ରହ୍ମଙ୍କୁ ସ୍ମରଣ କରି ଅଛନ୍ତି ସେହି ପ୍ରକୃତି ମାୟାଠାରୁ ଏହି ପ୍ରପଞ୍ଚ ଜଗତ୍ ଜାତ ହୋଇଅଛି ଏହି ନିମିତ୍ତ ଗୋପୀଜନ ଶବ୍ଦରେ ଜଗତ୍ ଜଣାଯାଏ ତାହାର ବଲ୍ଲଭ ଅର୍ଥାତ୍ ସ୍ୱାମୀ ।

ଏତଦ୍ୱାରା ଗୋପୀଜନ ବଲ୍ଲଭ ଶବ୍ଦରୁ ଗୋପୀମାନଙ୍କର ସ୍ୱାମୀ ବୋଲି ଜଣାଯାଉନାହିଁ ସେହି ଶବ୍ଦର ଅର୍ଥରେ ସୃଷ୍ଟିସ୍ଥିତି ପ୍ରଳୟର କର୍ତ୍ତା ଏହାହିଁ ସୂଚିତ ହୋଇଅଛି ।

'ବଲ୍ଲଭ' ଏହିସଭା ବର୍ଗଙ୍କ ଶବ୍ଦର କଦର୍ଥ କରି କେହି ବୁଝିବେ ନାହିଁ ଆମ୍ଭମାନଙ୍କର ଏହା ସମ୍ପୂର୍ଣ୍ଣ ଆଶା, ଏହି ଶବ୍ଦଦ୍ୱାରା ଯେପରି ଗୋପୀଜନ ଅର୍ଥାତ୍ ଗୋପାଙ୍ଗନା ମାନଙ୍କର ବଲ୍ଲଭ ଏହିଭାବ ଅନେକଙ୍କର ହୃଦୟରେ ବଦ୍ଧମୂଳ ଥିଲା ବ୍ରଜଗୋପୀକା ମାନଙ୍କ ସହିତ କିଶୋର ଶ୍ରୀକୃଷ୍ଣ ରାସକ୍ରୀଡ଼ା କରିଥିବାରୁ ସେହି କ୍ରୀଡ଼ାକୁ ଅନେକେ କୁଭାବରେ ହୃଦୟଙ୍ଗମ କରିବାକୁ ଚେଷ୍ଟାକରି ନାହାନ୍ତି କିନ୍ତୁ ଶାସ୍ତ୍ରୋକ୍ତ ପ୍ରମାଣଦ୍ୱାରା ଉପରୋକ୍ତ ଶବ୍ଦର ଅଳୀକତା ଯେପରି ପ୍ରତିପନ୍ନ ହେଲା ଶ୍ରୀକୃଷ୍ଣଙ୍କର ରାସକ୍ରୀଡ଼ା ସେହିପରି ଇନ୍ଦ୍ରିୟ ଚରିତାର୍ଥ ନିମିତ୍ତ ହୋଇନଥିବାର ଶାସ୍ତ୍ରୋକ୍ତ ପ୍ରମାଣଦ୍ୱାରା ପ୍ରମାଣିତ ହୋଇଅଛି । ଶ୍ରୀକୃଷ୍ଣଙ୍କର ବିଶୁଦ୍ଧ ଚରିତ୍ର ପ୍ରତି ଯେଉଁମାନେ ଅଯଥା କଳଙ୍କାରୋପ କରିଅଛନ୍ତି ଏବଂ ଯେଉଁ

ମାନଙ୍କର ହୃଦୟରେ ଏହାହିଁ ବଦ୍ଧମୂଳ ହୋଇଅଛିଯେ ଶ୍ରୀକୃଷ୍ଣ ନଷ୍ଟଚରିତ୍ର, ସେମାନଙ୍କ ହୃଦୟର ଉପରୋକ୍ତ କୁଭାବ ଅପନୋଦନ ହେବା ନିମନ୍ତେ ଏଠାରେ ଗୋଟିଏ ଘଟଣା ଉଲ୍ଲେଖ କରାଯାଉଅଛି । ଗୋପାଳ ତାପିନର ଉତ୍ତରଭାଗ ପ୍ରଥମ କଣ୍ଡିକାରେ ଉଲ୍ଲେଖ ଅଛି,

ଏକଦାହି ବ୍ରଜସ୍ତ୍ରିୟଃ ସକାମାଃ ଶର୍ବରୀ ମୁଷିତ୍ୱା । ସର୍ବେଶ୍ୱରଂ
ଗୋପାଳଂ କୃଷ୍ଣମୂଚିରେ, ଉବାଚ ତାଃ କୃଷ୍ଣଃ । ୧ ।

ଅର୍ଥାତ୍ ଏକଦା ବ୍ରଜ କାମିନୀଗଣ ଶ୍ରୀକୃଷ୍ଣଙ୍କ ନିକଟରେ ଏକରାତ୍ରୀ ବାସକରି ଗୋପବେଶ ଧାରୀ ସର୍ବେଶ୍ୱର ଶ୍ରୀକୃଷ୍ଣଙ୍କୁ ପ୍ରଶ୍ନ କଲେ

ନନୁକସ୍ମୈ ବ୍ରାହ୍ମଣାୟ ଭୈକ୍ଷ୍ୟଂ ଦାତବ୍ୟଂ ଭବତି ଦୁର୍ବା-
ସସେଇତି । ୨

କଥଂଯାସ୍ୟାମୋ ତୀର୍ତ୍ତ୍ୱା ଜଳଂ ଯମୁନାୟା ଯତଃ ଶ୍ରେୟୋ
ଭବତି । ୩

ଗୋପୀଗଣ ଶ୍ରୀକୃଷ୍ଣଙ୍କୁ ପ୍ରଶ୍ନକଲେ କି ପ୍ରକାର ବ୍ରାହ୍ମଣଙ୍କୁ ଭିକ୍ଷା ଦ୍ରବ୍ୟ ପ୍ରଦାନ କରିବା କର୍ତ୍ତବ୍ୟ କାହାକୁ ଭକ୍ଷ୍ୟ ଦ୍ରବ୍ୟ ପ୍ରଦାନ କଲେ ଆମ୍ଭମାନଙ୍କର ସର୍ବାଙ୍ଗୀନ ମଙ୍ଗଳ ହୋଇପାରେ ତାହାର ଉପଦେଶ ପ୍ରଦାନ କରନ୍ତୁ ଶ୍ରୀକୃଷ୍ଣ ଉତ୍ତର କଲେ ମୁନିପ୍ରବର ଦୁର୍ବାସାଙ୍କୁ ଭକ୍ଷ୍ୟ ପ୍ରଦାନ କଲେ ତୁମ୍ଭମାନଙ୍କର ମନସ୍କାମନା ପୂର୍ଣ୍ଣହେବ

ତତ୍ପରେ ଗୋପୀମାନେ ପ୍ରଶ୍ନ କଲେ ଆମ୍ଭେମାନେ କି ରୂପେ ଏହି ଦୁର୍ଲଙ୍ଘ୍ୟ ଯମୁନା ନଦୀ ପାରହୋଇ ମୁନିଙ୍କ ନିକଟକୁ ଗମନ କରିବୁଁ କି ରୂପ ବା ତାହାଙ୍କୁ ଭକ୍ଷ-ଣୀୟ ଦ୍ରବ୍ୟ ପ୍ରଦାନ କରିବୁଁ ? ଶ୍ରୀକୃଷ୍ଣ କହିଲେ,

"କୃଷ୍ଣେତ ବ୍ରହ୍ମଚାରୀ ଇତ୍ୟୁକ୍ତ୍ୱା ମାର୍ଗଂ ବୋ ଦାସ୍ୟତି"

ଅର୍ଥାତ୍ ହେ ଗୋପୀଗଣ "କୃଷ୍ଣ ବ୍ରହ୍ମଚାରୀ' ଏହି-କଥା ବୋଲି ତୁମ୍ଭେମାନେ ଯମୁନା ମଧ୍ୟରେ ପ୍ରବେଶ କଲମାତ୍ରେ ଯମୁନା ତୁମ୍ଭମାନଙ୍କୁ ପଥ ପ୍ରଦାନ କରିବେ ସୁତରାଂ ତୁମ୍ଭେମାନେ "କୃଷ୍ଣ ବ୍ରହ୍ମଚାରୀ" ଏହାବୋଲି ଯମୁନା ପାରହୁଅ ।

ଏହି ଉପଦେଶାନନ୍ତର ବ୍ରଜ ଗୋପୀକାଗଣ ଯମୁନା ପାରହୋଇ ଦୁର୍ବାଶା ମୁନିଙ୍କୁ ଭକ୍ଷ୍ୟଦ୍ରବ୍ୟ ଭୁଞ୍ଜାଇବାର ପ୍ରତ୍ୟାବୃତ୍ତହେବା ସମୟରେ ପୁନର୍ବାର ଦୁର୍ଲଙ୍ଘ୍ୟ ଯମୁନା ପାର ହେବାର ଉପାୟ ଜିଜ୍ଞାସା କରିବାରେ ଦୁର୍ବାଶା କହିଲେ,-

"ଦୁର୍ବାଶିନଂ ମାଂ ସ୍ମୃତ୍ୱା ବୋ ଦାସ୍ୟତୀତମାର୍ଗଂ"

ଅର୍ଥ-ଦୁର୍ବାଶା ଦୁର୍ବାମାତ୍ର ଆହାରୀ ଅଥବା ନିରାହାରୀ ବୋଲି ଆମ୍ଭଙ୍କୁ ସ୍ମରଣ କଲେ ସୂର୍ଯ୍ୟନନ୍ଦିନୀ ଯମୁନା ତୁମ୍ଭମାନଙ୍କୁ ପଥ ପ୍ରଦାନ କରିବେ ।

ଏହାଶୁଣି ଗାନ୍ଧର୍ବୀ ନାମ୍ନୀ ଗୋପୀକା ପଚାରିଲେ

"କଥଂକୃଷ୍ଣୋ ବ୍ରହ୍ମଚାରୀ କଥଂ ଦୁର୍ବାଶନୋ ମୁନିଃ"

ଅର୍ଥ- " କୃଷ୍ଣ କିପରି ବ୍ରହ୍ମଚାରୀ ମୁନି ? ଆପଣ କିପରି

ହୂବାଅହାଣି" ? ତଦୁତ୍ତରରେ ସେ ଗୋପୀନାଙ୍କୁ ଗୋଟିଏ ହୃଦସ୍ପୃ ଗ୍ରାହୀ ଉତ୍ତର ଦେଇ ସନ୍ଦେହ ଭଞ୍ଜନ କରିଥିଲେ ଯଥା, –

ଯୋହି ବିକାମେନ କାମାନ୍ କାମୟତେ ସ କାମୀ
ଭବତି ,
ଯାନ୍ ବେ ତ୍ତ୍ୱକାମେନ କାମାନ୍ କାମୟତେ ସୋଽକା–
ମୋଭବତି

ଅର୍ଥ – ଯେ ଅପଣାର ଇଚ୍ଛାର ବଶୀଭୂତ ହୋଇ ବିଷୟ କାମନା କରେ ତାହାକୁ କାମୀ ବୋଲଯାଏ ଯେ ଇଚ୍ଛାର ବଶୀଭୂତ ନ ହୋଇ କଅନ୍ଧେ ବିଷୟ ସ୍ୱୀକାର କରେ ତାହାକୁ ଅକାମୀ ବୋଲଯାଏ ।

ଶ୍ରୀକୃଷ୍ଣ ଇନ୍ଦ୍ରିୟର ବଶୀଭୂତ ନହୋଇ କାର୍ଯ୍ୟ କ୍ଷେତ୍ରରେ ଅବତୀର୍ଣ୍ଣ ହୋଇଥିଲେ ଅତଏବ ଶ୍ରୀକୃଷ୍ଣ ଅକାମୀ ॥

— ❋ଃ୦ଃ❋ —

ସମାପ୍ତ ।

# ଭୂମିକା ।

ଅତୁଲ ଗୌରବାସ୍ପଦ ଯୁବରାଜ ଶ୍ରୀଯୁକ୍ତ ସଚ୍ଚିଦାନନ୍ଦ ଦେବଙ୍କ ପ୍ରଣୀତ 'ଭୀଷ୍ମ'ର ରଚନା ଶେଷ ପରେ ବିଷୟ କାବ୍ୟୋପଯୁକ୍ତ ବିବେଚନା ନୋହିବାରୁ ପ୍ରଣେତା ତାହା ଅନାଦରରୂପେ ପରିତ୍ୟାଗ କରି ବହୁଦିନ ଅପ୍ରକାଶ୍ୟ ରଖିଥିଲେ । ମୁଁ ଯୁବରାଜଙ୍କର ଅନୁମତି ପ୍ରାର୍ଥୀ ହୋଇ ବର୍ତ୍ତମାନ ପୁସ୍ତିକାକାରରେ ପ୍ରକାଶିତ କଲି । ମୋର ସମ୍ପୂର୍ଣ୍ଣ ଭରସା ଅଛି ବିଷୟ କାବ୍ୟୋପଯୁକ୍ତ ନ ହେଲେ ସୁଷମା ସୁଗନ୍ଧ ହୀନ କିଂଶୁକ କୁସୁମ ସ୍ୱୀୟ ସ୍ୱର୍ଗୀୟରୂପ ମାଧୁର୍ଯ୍ୟରେ ଯେପରି ନୟନର ପ୍ରୀତି ସମ୍ପାଦନକରେ ସେହିପରି ସର୍ବ ଗୁଣୋପମ ଯୁବରାଜଙ୍କ ହୃଦୟୋଦ୍ୟାନ-ବିଚ୍ୟୁତ ଏହି କ୍ଷୁଦ୍ର କୁସୁମଟି ସତ୍ୱର ସମୁଜ୍ଜ୍ୱଳ ଛଟାରେ ଅବଶ୍ୟ କାବ୍ୟ ବିନୋଦୀ ମହାଶୟମାନଙ୍କର ପ୍ରୀତିସମ୍ପାଦନ କରି ଉତ୍କଳ ସାହିତ୍ୟ ଭଣ୍ଡାରରେ ସ୍ଥାନଲାଭ କରିବ ।

ପରିଶେଷରେ ଯୁବରାଜ ମହୋଦୟ ଏହି କ୍ଷୁଦ୍ର ପୁସ୍ତକ ଖଣ୍ଡି ଲେଖି ଚିରଦିନ ନିମନ୍ତେ ଅପ୍ରକାଶ୍ୟ

ରଖୁଥିବା ଓ ମୋର ପ୍ରାର୍ଥନାନୁସାରେ ଅନୁମତି ପ୍ରଦାନ କରିଥିବାରୁ ମୁଁ ତାଙ୍କଠାରେ କୃତଜ୍ଞତା ସ୍ୱୀକାର କରୁଅଛି । ଇତି ।

ତା। ୩୦ ।୯ ୯୪
ବାମଣ୍ଡା

ଶ୍ରୀ ଦାମୋଦର ମିଶ୍ର ଶର୍ମା

# ଭୀଷ୍ମ ।

ରାଗ — ରାମକେରୀ ।

ଯେ ଦେଶ-ଉତ୍ତରୀ — ଦିଶରେ
ହିମାଳୟ ପର୍ବତ ,
ପ୍ରାଚୀର ସ୍ୱରୂପ ବିରାଜେ
ସଦା ହୋଇ ଉନ୍ନତ ॥
ଜନ ମନୋହର ସ୍ୱର୍ଣ୍ଣିମା
ଶୋଭେ ଯାହା ବକ୍ଷରେ,
ଅବର ବିଭୂତି ତଟିନୀ
ଖେଳେ ସମସ୍ତ ଘରେ ॥
ତଳି ଦକ୍ଷେ ନୀଳ ସମୁଦ୍ର
ଯାର ଉଠେ ପଟଳ ,
ବିନ୍ଧ୍ୟ ମହୀଧର ମଧ୍ୟେ
ଟେକି ରହିଛି ଶିଖା ॥
ସେହି ସ୍ୱର୍ଣ୍ଣ - ଭୂମି - ହୃଦରେ
ଶୋଭେ ହସ୍ତିନା ପୁର ,
ଯା କୀର୍ତ୍ତି ଗାଉଛି ଜାହ୍ନବୀ
କରି ସ୍ୱର ମଧୁର ॥
ସେ ଦେଶ ନୃପତି ଶାନ୍ତନୁ

ସଦା ପ୍ରଜା ବତ୍ସଳ
ସୂର୍ଯ୍ୟାଂଶୁ ସଦୃଶେ ବ୍ୟାପିଲା
ଯାର କୀର୍ତ୍ତି ବିମଳ ॥
ମହା ବୀର୍ଯ୍ୟଶାଳୀ – ଶାନ୍ତନୁ
ଯୁଦ୍ଧେ ଯଥା କେଶରୀ ,
ବୀରବୃନ୍ଦେ ଗଦା ଖେଳନେ
ଥିଲେ ହେବ କେ ସରି ?
ପୁତ୍ର ସମ ପ୍ରଜା ପାଳନେ
ନୃପ ସଦା ତତ୍ପର ,
ରୂପେ ଗୁଣେ ଧନେ ସମାନ
ନାହିଁ ଧରା ମଧ୍ୟର ॥
ଗଙ୍ଗା ତଟେ ଦିନେ ଭୂପତି
କରୁଁ କରୁଁ ଭ୍ରମଣ ,
ଅତି ଅଦ୍ଭୁତ ବ୍ୟାପାର
ତହିଁ କଲେ ଦର୍ଶନ ।
ଶନ୍ତକାଳେ ବଦ୍ଧ ପ୍ରବାହ
ଜାହ୍ନବୀ ଦେଖି ଶୁଷ୍କ ନୀର ,
କାରଣ ନଜାଣି ନୃପତି
ହେଲେ ବଡ଼ ଅଧୀର ॥
ଅନୁସନ୍ଧାନରେ ଦେଖିଲେ
ଏକ ନୃପ କୁମାର ,
ନିଃଗତ ଶର ପ୍ରୟୋଗେ

ହୋଇଅଛୁ ତପୂର ॥
ତୁଳନାକୁ ନାହିଁ ଉପମା
ହୁଏ ଗୁଣେ ଯାହାକୁ ,
ଅନିମିଷ ନେତ୍ରେ ବିଧିଙ୍କ
ଗଢ଼ିଅଛୁ ଏହାକୁ ?
ପଦ୍ମଦଳ ପର ମଞ୍ଜୁଳ
ଦିଶେ ନେତ୍ର ଯୁଗଳ
ଅଜାନୁ—ଲମ୍ବିତ ବିଶାଳ—
ଭୁଜ, ତେଜେ ଅନଳ ।
ଉନ୍ନତ ଲଲାଟେ, କୁଞ୍ଚିତ—
କେଶ ଶୋଭେ ମସ୍ତକେ
ବକ୍ଷେ ହାର, କରେ ଶାୟକ,
ଧନୁ ଅଛି ହସ୍ତକେ
ଗଣ୍ଡ ବିମଣ୍ଡନ କୁଣ୍ଡଳେ
ଶୋଭେ ଶ୍ରୁତି ପାଳି
ଭୁଲଡୋର ଛଟା ଦିଶଇ
ମାର ଶାୟକ ଭଳି ।
ସ୍ୱର୍ଣ୍ଣଦୀ-ପ୍ରବାହେ କରୁଛୁ
ବସି ଜଳ ପ୍ରହାର
କ୍ଷୀତ ଜଳେ ଉଠି ତରଙ୍ଗ
ଭ୍ରମେ ଚକ୍ର ଆକାର ।
ଦେଖି ଶାନ୍ତନୁକୁ ଅଦୂରେ

ସେହି ନୃପ ନନ୍ଦନ
ଅନ୍ତର୍ଦ୍ଧାନ ଗଙ୍ଗା ତଟରେ
ହୋଇ ଗଲେ ବହନ ॥
ଆଶ୍ଚର୍ଯ୍ୟରେ ଏବେ ଆଶ୍ଚର୍ଯ୍ୟ
ନୃପ କଲେ ଦର୍ଶନ
"କାହାକୁ ପୁଚ୍ଛିବି" ଭାବଣ
ଚଉଦ କଳ୍ପିଲ ଛନ୍ନ ॥
"ବହୁତ ଭ୍ରମଣ କରିଛି
ବହୁ ଧନ ଭାରତେ
ଦେଖି ନଥିଲି ମୁଁ ଏମନ
କେବେ ମୋ ନେତ୍ରପଥେ"।
ଜଳାବର୍ତ୍ତେ ସଦା ଭ୍ରମଇ
ଯଥା ଜଳ ସଙ୍କୁଳ
ସନ୍ଦେହରେ ତଥା ହୋଇଲା
ନୃପ ହୃଦ ଆକୁଳ ॥

ଅହୋ ! କି ଧଡାସ ଦର୍ଶନ
କଲେ ନର-କେଶରୀ
ଉଭା ସମ୍ମୁଖରେ ଜାହ୍ନବୀ —
ଦିବ୍ୟ ନାରୀ — ସୁନ୍ଦରୀ ॥
ଗୌର ତନୁ ସିତ ବସନେ
ନାଏ ନୟନ ହର
କ୍ଷୀରାବ୍ଧି-ତରଙ୍ଗ ମାଳେ କି

ସିକେ ଜ୍ୟୋସ୍ନା – ସୁନ୍ଦରୀ ?

କୁନ୍ଦ ପୁଷ୍ପ ଲୁଚ ବିକାଶେ
ଅଙ୍ଗ ପ୍ରଭା ବିମଳ
କୋଟି ଚନ୍ଦ୍ର ଗଞ୍ଜି ବଦନ
ଦିଶୁ ଅଛି ଉଜ୍ଜ୍ୱଳ ॥
ରୂପେ ଗୁଣେ ହୋଇ ଭୂଷିତା
ଶୋଭା ବିନା ଭୂଷଣେ
ଶରଣ କଅବା ଧନିଷ୍ଠା
'ଶୋଭା ଦେବୀ' ଚରଣେ ?
ନୀଳ କେଶ-ପାଶ ଦୋଳଇ
ପୃଷ୍ଠେ ଚୁମ୍ବି ପୟର
ଶୋଭାଗ୍ରାମ କାମୋଦ୍ଦୀପନ
ଦ୍ରାଘୃ କି ମନୋହର ॥
ବିପଞ୍ଚୀ ଝଙ୍କୃତ ସମାନ
ନୁହେ ସେ କଣ୍ଠସ୍ୱରେ
ସେହି ସ୍ୱରେ ସୁଧା ଢାଳଲେ
ନୃପ — କର୍ଣ୍ଣ — କୁହରେ ॥
"ହେ ଭୂପ ! ଶୈଶବେ ତନୟା
ମାତା କରେ ପାଳନ
ବର୍ତ୍ତେ କାଳ ମୁଁ ପାଳିଲି
କରି ବହୁ ଯତନ ॥
ଗାତ୍ର ଶାସ୍ତ୍ର ବିଦ୍ୟାଗାରେ

(୧୯୨)

କର ଅଛୁ ଦୀକ୍ଷିତ
ବଳେ ମହାବଳୀ କୁମାର
ରଣେ ରଣ-ପଣ୍ଡିତ ॥
ଶାନ୍ତ ସତ୍ୟବାଦୀ ସୁଶୀଳ
ଗୁଣେ ଅଛ ଗୁଣିଙ୍କ
ଘେନନ୍ତୁ ସଦୟେ ଅର୍ପୁଛି
ମୋର କଳା ମାଣିକ ॥
ଅଷ୍ଟମ ଗର୍ଭରେ ସମ୍ଭୂତ
ଏହି ଯୋଗ୍ୟ କୁମାର
ରୂପ ତୁଳନାକୁ ସମାନ
ଯାକୁ ନୁହଇ ମାର ॥
ଦେଲେ ସୁଖାସନ କରିବେ
ସଙ୍ଗ ବହୁରପଣେ ,
ନେବାହେଉ ଭବ କୁମାର
ଦେବ ନିଜ ଗହଣେ ॥"
ନିଶା: ଶୋଭି ମନ୍ତ୍ରୀ-ଜାହ୍ନବୀ
ବାଣୀଗୁଣି ନୃପତି ,
କଲେ ପ୍ରମୋଦରେ ଗ୍ରହଣ
ହୋଇ ହରଷ ମନ୍ତ ॥
ଅପୁତ୍ରିକ ନୃପ ଲଭିଣ
ଯୋଗ୍ୟ ପୁତ୍ର-ରତନ ,
ଆନନ୍ଦ ଗଦ୍‌ଗଦେ ଫେରିଲେ

ନିଜ ରାଜ୍ୟେ ବହନ ॥
ନିଭିବାରୁ ନୃପ ପ୍ରଶ୍ନର
ଯାହା ସ୍ୱପ୍ନେ ଦୁର୍ଲ୍ଲଭ ,
ପାଇ ସେ କୁମାରେ ଲଭିଲ
ରାଜ୍ୟେ ମହା ଉତ୍ସବ ॥
ଶୁଣି ରାଣୀ , ଅନ ନାରୀଏ
ହେଲେ ଆନନ୍ଦ ଚିତ୍ତେ ,
ଲେଖି ଲେଖକାରେ ସେ ଲୁବ୍ଧ
କେବା ରହିବ କେତେ ?
କେତେ ଦେବ ଦେଖା ସେଥିଲେ
କେତେ ଦେଇଣ ଭୋଗ ,
କଲେ ପୁତ୍ରେ ରାଜ୍ୟ ପ୍ରଦାନ
ନୃପ ବୁଝି ସୁଯୋଗ ॥
ସିଂହାସନ ଲଭି ତନୟ
ଅତି ଆନନ୍ଦ ମନେ ,
ପୁତ୍ର ସମ କଲେ ପାଳନ
ପ୍ରଜା ଅତି ଯତ୍ନେ ॥
ଦେବୋପମ ପିତା ଚରଣେ
ସଦା ରଖି ଭକତ ,
ସ୍ୱଧର୍ମ୍ମ ତତ୍ପର , ସର୍ବଦା
ଦେବ ପୂଜନେ ମତ ॥
ଉଦାସୀନେ ଦିନେ ଶାନ୍ତନୁ

ଭ୍ରମୁଁ ଯମୁନା ତଟେ ,
ଲତା କୁଞ୍ଜେ ଦିବ୍ୟ ଅଙ୍ଗନା
ଦୃଷ୍ଟି କଲେ ନିକଟେ ॥
ଅନଲ୍ପ ବୟସୀ ଶାରଦ –
ପୂର୍ଣ୍ଣଚନ୍ଦ୍ର ବଦନା ,
ଦର ବିକଶିତ କୁମୁଦ –
ହାସୀ ଚନ୍ଦ୍ରାବରଣା ॥
ପରମ ଲାବଣ୍ୟ ରୂପକୁ
ବିସ୍ତାରିଛି 'ଅବଳା ,
ସ୍ଥିରହୋଇ କଳା ବାଦରେ
ବସିଛି କି, ଚପଳା ? ॥
ପ୍ରସ୍ଫୁଟିତ ନୀଳଉତ୍ପଳ
ନେତ୍ରେ ନୃତ୍ୟଇ ସର ,
ଗଞ୍ଜି ଯାଏ ନେତ୍ରୀ ଦୋଳାଇ
ବାଳ ମଧୁପ ପର ॥
ବଣ – ମୃଗ ଶିଶୁ ପରି ଏ
ହେଉଅଛି ଚଞ୍ଚଳ ,
ଦେଖିଦେଲେ ଟଳି ପଡନ୍ତ
ଯୋଗୀ ଚିତ୍ତ — ଅଚଳ ॥
ଉରଜାଗ୍ର ଚୁମ୍ବି ଦୋଳଇ
ବକ୍ଷେ ହୀରକ ମାଳା ,
ହାର ଯୋଗେ ମୁଖ ଛଟାରେ

କେତେ ସୁନ୍ଦର ବାଳା ॥
ଗୁଚ୍ଛୁ ଗୁଚ୍ଛ ପଟ୍ଟ ଦୋଳଇ
କର୍ଣ୍ଣେ ସ୍ୱର୍ଣ୍ଣ କୁଣ୍ଡଳ ,
ମୁଖ ଚନ୍ଦ୍ର ପ୍ରଭା ବଢ଼ାଇ
ଚୁମ୍ବେ ଗଣ୍ଡ ମଣ୍ଡଳ ॥
ଅଙ୍ଗୋନ୍ନତ ବେନି ବକ୍ଷୋଜ
ଢଙ୍କେ କେତେ ମଞ୍ଜୁଳ ,
ଲାବଣ୍ୟ ସରସେ ପ୍ରକାଶ
କିବା ପଦ୍ମ ମୁକୁଳ ॥
କ୍ରମେ କ୍ରମେ ବାଳା- ସମୀପେ
ଗଲେ ନୃପ ଅଗ୍ରଣୀ
ଦେଖି ଲଜ୍ଜେ ଶିରେ, ସୁନ୍ଦରୀ
ଆବରିଲେ ଓଢ଼ଣୀ ॥
ସଶଙ୍କେ ଶାନ୍ତନୁ ବାଳାକୁ
ପ୍ରଶ୍ନ କଲେ ସଧୀରେ ,
କାହା ନନ୍ଦନୀ ତୁ କିପାଇଁ
ବସିଅଛୁ ଏଠାରେ ?
କି ନାମ ଅଟଇ ତୋହର ?
ବାଳା କର ପ୍ରକାଶ ,
ଶୁଣିଣ ସତ୍ୱର ଦେଉ ଗୋ
ମୋର ସନ୍ଦେହ ନାଶ ॥
ବୀଣାକ୍ୱଣାସ୍ୱରେ ଭାଷିଲେ

ଧୀର କର ସୁନ୍ଦରୀ ,
'ସତ୍ୟବତୀ' ନାମ ମୋହର
ଦାସ - ବୃଦ୍ଧ - କୁମାରୀ ॥
ଦେଖିଣ ଲାବଣ୍ୟବତୀକୁ
ଶାନ୍ତନୁଙ୍କ ହୃଦୟ ,
ଲଭିବାକୁ ପତ୍ନୀ ସ୍ୱରୂପେ
ହେଲାବଡ ଅଥୟ ॥
ପାଶେ ସମାବେଶ ରାଜାଙ୍କୁ
ଦେଖି ନାଗରୀ ହୀରା ,
ପତିରେ ବରଣ କରିବ
ଭାଳି ହେଲା ଅଧୀରା ॥
ପିତାଙ୍କ ପ୍ରତିଜ୍ଞା ସେକାଳେ
ମନେହେଉଁ ସ୍ମରଣ ,
ବିଷାଦ—ବାରିଦ ଢାଙ୍କିଲା
ଗୁରୁ ଚନ୍ଦ୍ର ବଦନ ।
ସ୍ୱଗତେ ଭାବିଲା ସେକାଳେ
ସେହି ରମଣୀ ମଣି ,
ଯଦି ସେ ପ୍ରତିଜ୍ଞା ହୋଇଲା
ମୋହ ପକ୍ଷେ ଅଶନି ॥
କାହିଁ ଅଗତ ଏ ରସିକ
କେଉଁ ଶୋଭାଙ୍ଗୀସ୍ଥତ ?
ଦେଖିଥିବ କେତେ ପ୍ରେମିକା —

—ପ୍ରେମ ହାଟ ଉଚ୍ଚାଟ ।
ପିତାଙ୍କ ପ୍ରତିଜ୍ଞା ଯୋଗରୁଁ
ଅଜ୍ଞାନାହିଁ ମୋହର ,
ନୋହିଲେ ଲଭନ୍ତ ଅବଶ୍ୟ
ଏହି ସୁନ୍ଦର ବର ॥
ଭାବୁଁ ଏହିରୂପେ ସୁନ୍ଦରୀ
କଲା ଅଶ୍ରୁ ବର୍ଷଣ ,
ପାଣ୍ଡୁବର୍ଣ୍ଣ ହୋଇ ସୁନ୍ଦର
ମୁଖହେଲା ବିବର୍ଣ୍ଣ ॥
ଶାନ୍ତନୁ ଜାଣିଲେ ଚଞ୍ଚଳେ
ବାଳା ମୁଖ ଦର୍ଶନେ ,
'ବଳଷ୍ଟ ସୁନ୍ଦରୀ ମାନସ
ମୋରପାଣି ଗ୍ରହଣେ' ॥
ଆଶା ମଦେମତ୍ତ ଶାନ୍ତନୁ
ଗଲେ ଦାସ ନିକଟେ ,
'ସତ୍ୟବତୀ' ପ୍ରତିବାସନା
ରଖି ହୃଦୟ ପଟେ ॥
ଦାସରାଜାଙ୍କର ନିକଟେ
କନ୍ୟାକରୁଁ ପ୍ରାର୍ଥନା ,
ପ୍ରକାଶିଲେ ପଣ ବିଷୟ
ଯାହାଥିଲା କାମନା ॥
"ଲଭନ୍ତୁ ଆପଣ ଅନଘ !

ଭାରତରେ ପ୍ରଖ୍ୟାତ ,
ବୀରଦର୍ପେ ସଦା ଦୀପିତ
ତୁମ୍ଭ ଯଶୋଦୀପ୍ତ ।
ହେଲ ପ୍ରତିଶ୍ରୁତ କରିବ
ମୁହିଁ କନ୍ୟାପ୍ରଦାନ ,
କିନ୍ତୁ ମୋର ଏହି ପ୍ରତିଜ୍ଞା
ରକ୍ଷାକର ଅଧିଶ ॥
ତବ ଔରସରେ ଜନ୍ମିବ
ଯେଉଁ ପୁତ୍ର ରତନ ,
ତବ ଅନ୍ତେ ସେହି ଲଭିବ
ସେହି ରାଜା ଆସନ ॥
ବଞ୍ଚିତ ହୋଇବେ ରାଜ୍ୟରୁ
ଅନ୍ୟ ପୁତ୍ର ତୁମ୍ଭର ,
ଜଣାଉଛି ଦେବ ତୁମ୍ଭଙ୍କୁ
ଏହା ଦୃଢ଼ ମୋହର ॥"

ନଟବାଣୀ-ବୃତ୍ତେ

ଶାନ୍ତନୁ ଶୁଣନ୍ତେ ଦାସଙ୍କ ବଚନ
ସ୍ତମ୍ଭୀଭୂତେ ହେଲେ ଅବନତ ବଦନ।
ଫୁଟି ଆସୁଥିଲା ଯେ ଆଶା ମଲ୍ଲିକା
ଏବେ ଛିନ୍ନହୋଇ ଗଲା ସେ କଳିକା ।
ମୃଗତୃଷ୍ଣା ଦେଖି ଏହି ରୂପେ ସିନା

ପ୍ରଧାବିତ ହୁଏ ମୃଗ ଜଳ ବିନା ।
ଭଗ୍ନ ମନୋରଥେ ବାହୁଡ଼ ସଦନେ
ସର୍ବଦା ରହିଲେ ଚିନ୍ତାନ୍ୱିତ ମନେ ।
ଦାବାନଳ ରୂପୀ ଚିନ୍ତା ବିକରାଳ
ହେଲା ତାଙ୍କ ପକ୍ଷେ ଦୁଃସହ କରାଳ ।
ହେଉ ଅଛି ମନ ସଦା ଆନ୍ଦୋଳିତ
ଶିଳା ଯୋଗେ ଯଥା ନଦୀ ଆବର୍ତ୍ତିତ ।
ଶାନ୍ତନୁ ହୋଇଲେ ଦିନୁ ଦିନୁ କ୍ଷୀଣ
ତହିଁ ସଙ୍ଗେ ନଜ ପ୍ରଭା ହେଲା ହୀନ ।
ପିତା ଦୁରବସ୍ଥା ଦେଖି ଦେବବ୍ରତ
ହେଉଥିଲେ ଧୀର ମନରେ ସନ୍ତପ୍ତ ।
ପୁଚ୍ଛିଲେ ପିତାଙ୍କୁ ଦିନେ ଯୁବରାଜ
"ଚିନ୍ତା କିପାଁ ଛାଡ଼ ଏ ବିଶାଳ ରାଜ୍ୟ ।
ଜାଣୁଛି ହେ ପିତଃ ! ମୋହର ନିମନ୍ତେ
ସର୍ବଦା ଆପଣ ଭାବୁଛନ୍ତି ଚିତ୍ତେ ।
କହ ଦେବ ! ମୁହିଁ ତବ ଅଭିଳାଷ
ପୂରଣ କରିବି ତେଜି ମୋ ବିଳାସ ।
ଯେ ପୁତ୍ର ପିତାଙ୍କ କାର୍ଯ୍ୟ ନ ସାଧଇ
ପୁତ୍ର ପଣକୁ ସେ ଭାଜନ ନୁହଇ ।
ଆଜ୍ଞା ହେଲେ ମୁହିଁ କରିବି ପାଳନ
ହେଉ ପଛେ ମିତ୍ର କରିବି ଦମନ" ।
ତନୟ ବିନୀତ ବଚନେ ଶାନ୍ତନୁ

ଦୂରକର ଅନ୍ତେ ଚିନ୍ତା ନିଜମନୁ ।
ସଦା ଚିନ୍ତାନ୍ୱିତ ଶାନ୍ତନୁ ପ୍ରବୀର
କହିଲେ କୋମଳେ ସୁମଧୁରଗିର ।
"କରଅଛ ବତ୍ସ ! ଯେଉଁ ଅନୁମାନ
ନୁହେ ଅଯଥାର୍ଥ ସମସ୍ତ ପ୍ରମାଣ ।
ତୁମ୍ଭେ ଏକ ମାତ୍ର ତନୟ ମୋହର
ତେଣୁ ମୁଁ ଚିନ୍ତାରେ ନିରତେ କାତର ।
ରୂପେ ଗୁଣେ ମାନେ ଜଗତେ ବିଦିତ
ତବ କୀର୍ତ୍ତି ଏବେ ଭାରତେ ଘୋଷିତ ।
ସମ୍ମୁଖ ସମରେ ମହା ଧନୁର୍ଦ୍ଧାରୀ
ଧନୁର୍ଦ୍ଧାରୀ ଯଥା ଦେବ ତାରକାରି ।
ତାରକାରିଙ୍କର ଅଛି ସହୋଦର
ସହୋଦର କିନ୍ତୁ ନାହିଁ କେ ତୁମର ।
ଦିନେ ଯେବେ ଭବବ୍ରତ ଉଦ୍ୟାପନେ
ନିଦ୍ରାଯିବ ବତ୍ସ ! ସମର ପ୍ରାଙ୍ଗଣେ ।
ଆହାରେ !! ସେଦିନ ଦେବ ବ ମୋଗତ
ବଂଶଧ୍ୱଂସ ହୋଇ ଲଭିବ ଦୁର୍ଗତି ।
ଏହି ଚିନ୍ତା- ଘୋର ଦାବାନଳ ପରି
ଦହୁଛି ହୃଦୟ - ବନକୁ ମୋହର ।
ହୃଦୟ- କାନନ ପୁଡ଼ି ଚିନ୍ତାନଳ
ବାଷ୍ପ ଯୋଗୁଁ ନେତ୍ର ଜଳ ଅବିରଳ -
ବୁହଇ, ନିରତ ହୋଇଛି କାତର

ମନ ଦୁଃଖକଥା ବିଭୁଙ୍କୁ ଗୋଚର ।
ପିତାଙ୍କ ବଚନେ ଦେଖି ଦେବବ୍ରତ
ପିତା ଦୁଃଖ ଜାଣି ହେଲେ ଶଶବ୍ୟସ୍ତ ।
ପିତା ପାଶୁଁ ପୁତ୍ର କଲେଣ ଗମନ
ପୁଚ୍ଛିଲେ ମନ୍ତ୍ରିଙ୍କୁ ସବୁ ବିବରଣ ।
ଚତୁର ସଚିବ ଭାଷିଲେ ଭାରତୀ,
ଏଦୁଃଖର ମୂଳ ଅଟେ ସତ୍ୟବତୀ
ଚନ୍ଦ୍ର ପ୍ରାପ୍ତଜାତ ହୋଇ ଧରାତଳେ
ରୂପରଶ୍ମି ସୂତ୍ରେ ବାନ୍ଧିଛି କୌଶଳେ ।
ନପାଇବା ଯାଏ ସେହି ସତ୍ୟବତୀ
ନଘୁଞ୍ଚିବ ତବ ପିତାଙ୍କ ଦୁର୍ଗତି ।
ଦାସ ରାଜା ସତ୍ୟେ ହୋଇଛି ବନ୍ଧନ
ସତ୍ୟବତୀ ଗର୍ଭୁ ହୋଇବ ଯେ ଜନ ।
ସେ ଔରସ ପୁତ୍ର ନେବ ରାଜ୍ୟଧନ
ଏହି ପାଇଁ ନୃପ ଚିନ୍ତାକୁଳ ମନ" ।
ଦେବବ୍ରତ ଶୁଣି ସଚିବ ଭାରତୀ
କନ୍ୟା ପ୍ରାର୍ଥନାକୁ ବଳାଇଣ ମତି ।
ସଙ୍ଗେ ଘେନି ପାତ୍ର ମନ୍ତ୍ରିଙ୍କୁ ବାହନ
ଦାସ ଗୃହେ ବୀର କରିଲେ ଗମନ ।
ଅଭ୍ୟର୍ଥିତ ହେଲେ ଦାସଙ୍କ ସଦନେ
ରାଜଉପଯୋଗୀ ନାନା ଉପାଦାନେ
ଦାସମୁଖୁଁ ପଣ ବିଷୟ ସମସ୍ତ

ସଭାସଦେଶୁଣି ହୋଇଲେ ଚକିତ ।
କିନ୍ତୁ ଦେବବ୍ରତ ଯାଙ୍କ ହୃଦୟ
ଶୁଣି ପଣ ଟଳେ ନୋହିଲ ଅଥୟ ।
କହିଲେ କୁମାର, ଶୁଣଅହେ ଆର୍ଯ୍ୟ ।
ତେଣୁ ଯିବ ସତ୍ୟ ନାହିଁ ଭଳିଁ କାର୍ଯ୍ୟ ।
ପିତାଙ୍କ କାମନା ହୋଇଲେ ପୂରଣ
ହେବ ସତ୍ୟ ଲଭ - ସମ ସୁଖାର୍ଜନ ।
ଦେବବ୍ରତ-ବାଣୀ ଶୁଣି ନରପତି
କନ୍ୟାଦାନ ପାଇଁ କଲେ ସେ ସମ୍ମତି ।
ଶୁଣିଣ ଶାନ୍ତନୁ ହେଲେ ହୃଷ୍ଟ ମନା
ବିବାହେ ଆଣିଲେ କନ୍ୟା ସୁଲୋଚନା ।
କରି ଦେବ ବ୍ରତ ପ୍ରତିଜ୍ଞା ଭୀଷଣ
କଲେ 'ଭୀଷ୍ମ' ନାମ ଜଗତେ ଧାରଣ ।

— *:O:* —

ସମାପ୍ତ ।

# ଚନ୍ଦ୍ରଦୂତ ।

— *:୦:* —

ରାଗ - ବଙ୍ଗଳାଶ୍ରୀ ।

ଊର୍ମ୍ମିମାଳା - କୂଳା — ଗୋଦାବରୀ ନଦୀ
ଭାରତ - ବକ୍ଷ - ଭୂଷଣ
ସୃଷ୍ଟି - ପଦ୍ମ ଫୁଟିଲେ, ଦୋଳୁଥିଲେ ଯହିଁ
ତାପସ - ତନୟାଗଣ ।
କଳ କଳ ନାଦେ ବହଇ ପ୍ରମୋଦେ
ସାଙ୍ଗ ରମ୍ୟ ଜଳ-ବେଣୀ
ତୀର ବିହାରିଙ୍କ ମନ ମୋହୁଥାଏ
ସଙ୍ଗେ ଘେନ ପୁଷ୍ପ ଶ୍ରେଣୀ ।
ଯାଚିରେ ବିଶାଳ ଧନେଶ୍ୱର ପୁରେ
'ଉଦୟ' ନାମେ କୁମାର
~~ପ୍ରାଣ ମନୋରମା~~ ସୁପ୍ରିୟା ସଙ୍ଗରେ ପାରାଣୀ
ଅନନ୍ଦେ କରେଁ ବିହାର ।
ସାନ୍ଦ୍ର ପ୍ରେମ ଯୋଗୁଁ ଯୁଗ୍ମ - ଚିରପ୍ରାଏ
ହୋଇଥିଲେ ପତିଜାୟା
ଏକ ଆରେକକୁ ମୁହୂର୍ତ୍ତ ନପାରି
ହେଲେ ଯଥା କାୟା-ଛାୟା ।

ଦେଶାନ୍ତର କଲା     ଛିନ୍ନ କରିବଧି
ପ୍ରେମିକା-ପ୍ରେମ-ଶୃଙ୍ଖଳ
ତେଣୁ କ୍ଷିପ୍ତ ହୋଇ     କୁମାର ସେକାଳେ
ଅସାର ମଣେ ସକଳ ।
ବନ୍ଧୁଜନ ବନ୍ଧୁ—     ପଥ. ଭ୍ରମିଯୁବା
ପ୍ରବେଶି ବିନ୍ଧ୍ୟ ପର୍ବତେ
ଯେଣେ ଗଲେହେଁ ତେଣେ     ଦେଖେ ଜୀବପ୍ରାଣ
—ବାନ୍ଧବୀ-ଛବି ଅଗ୍ରତେ ।
ବାଳକ ପରି ଏ     କରଇ ରୋଦନ
ପ୍ରେମିକା ଭାବ ସୁମରି
ଭାବବତୀ ମୂର୍ତ୍ତି —     ବତ୍ରିଶ ଲକ୍ଷଣା
ବର୍ଣ୍ଣିବ ଜନ କିପରି ? ।
ନବ-ଦୂର୍ବାଦଳ-     ଲାବଣ୍ୟ-ବିଗ୍ରହ
ଦିଶିଗଲା ଅପ୍ରସନ୍ନ
ବିଷାଦ - ବାରିଦ     ରହିଲା ଆବରି
ବିମଳ ଚନ୍ଦ୍ର ବଦନ ।
ବନେ ଏକାନ୍ତରେ     ବ୍ୟାକୁଳ ଚିତ୍ତରେ
ବିଚାରେ ଯୁବକବର
କେଯାଇ କହନ୍ତା     ପ୍ରାଣ କାନ୍ତା ପାଶେ
ସକଳ ଦୁଃଖ ମୋହର ।
ଗିରିଶୃଙ୍ଗେ ବସି     ଦେଖିଲା ପ୍ରେମିକ

ପ୍ରାଚୀ ଚୂଳେ ସ୍ୱର୍ଣ୍ଣ ପ୍ରଭ —
କମନୀୟ ଅଙ୍ଗ — ନଭୋନାଥ ଦିଶେ
ଚେକଣ ହିଙ୍ଗୁ ଗରଭ ।
ପୁଷ୍ପ ଧନୁ ପାଣି ତର୍ଜ୍ଜିଛି ଯାହାକୁ
ସନ୍ତତ ପୁଷ୍ପ – ମାର୍ଗଣେ
ଅଚେତନ ଯେତେ ଦିଶେଷା ନେହକୁ
ସଚେତନ ପରା ମଣେ ।
କଷ୍ଟଲ କାତରେ ବେନକର ଯୋଡ଼
"ଶୁଣହେ ପୂର୍ଣ୍ଣ ଚନ୍ଦ୍ରମା !
ତୁମ୍ଭେ ଯଥା ଦିବେ — ରୂପେ ଅପ୍ରତିମା
ତବେତଥା ମନୋରମା ।
ଜଗତର ଛବି ଦସ୍ୟା ପୂର୍ଣ୍ଣିତରେ
ଦେଉଛ ଶୀତ ମୟୂଖ
ପର ଉପକାରୀ ଜାଣି ଜଣାଉଛି
ଯେନଗୁ ମୋହର ଦୁଃଖ
ବ୍ୟୋମ ମାର୍ଗେସ୍ଥିତ — ବାରିଦ ବମାନେ
ଭ୍ରମି ମହାକୌତୁକରେ
ଦୟାକର ଥରେ ଜଣାଅ ଚନ୍ଦ୍ରମା
ମୋ ଦୁଃଖ ପ୍ରିୟା ପାଶରେ ।
ନିସ୍କଳଙ୍କ ମୁଖ ଦେଖିଣ ତାହାର
ନଫେରିବୁ ଲଜ୍ଜାବଶେ
ନଥିବରେ ଅଭ ସେ ତୁଳ କଳଙ୍କ

ସୁରସା ମୁଖ ସାରସେ
ତୁମ୍ଭ ଚରଣରେ ଧୌତ ହୋଇଥିବ
ଧନେଶ୍ୱର ହର୍ମ୍ମ୍ୟମାଳା
କାଳ ଯାଉଥିବେ ସେହି ହର୍ମ୍ମ୍ୟକୂଳେ
କାନ୍ତପାଶେ ମୁଗ୍ଧାବାଳା ।
ସ୍ତୋକ-ବକ୍ରଗ୍ରୀବା — ଦେଶେ ଚନ୍ଦ୍ରହାର †
ସୁନ୍ଦରୀ ଥିବେ ଲମ୍ବାଇ
ତୁମ୍ଭ ସ୍ନିଗ୍ଧକର ଛଟକ ତାହାର
ଦ୍ୱିଗୁଣେ ଦେବ ବଢ଼ାଇ ।
କରୁଥିବେ ମାନ — ରଙ୍ଗ ଗୃହୁଁ ଚିରେ
କାମୁକ ହୋଇ ବଞ୍ଚିତ
ଉଦ୍ଦୀପକ — ରଶ୍ମି ସେ କାଳେ ପ୍ରକାଶି
ସାଧିବୁ ତୁହାଙ୍କ ହିତ ।
ଅଖିଳ ଜଗତେ ବଡ ହତ ଭାଗ୍ୟ
ଏଣୁଇ ମୁହିଁ ଚନ୍ଦ୍ରମା
ନବସ୍ତ୍ରୀଭ କାଳେ ମୋତୋଲୁ ଅନ୍ତର
ହେଲା ମୋର ମନୋରମା ।
ଚନ୍ଦ୍ର ଶାଳା ପରେ ମୋପ୍ରାଣ ପ୍ରେୟସୀ
ବସିଥିବ ନକାଞ୍ଚନେ
ବିଚ୍ଛେଦ ବାସର ଗୋଟି ଗୋଟିକର

† ଚନ୍ଦ୍ରହାର— ଦକ୍ଷିଣ ଦେଶର ଅଲଙ୍କାର ବିଶେଷ

ଗଣୁଥିବ ମନେ ମନେ !
ନିଦାଘର ଗ୍ରୀଷ୍ମ — ବୃତଘ୍ନ ପରାଏ
ହୋଇବଣି ମ୍ଳାନ ଅତି
ଢାଙ୍କିଥିବ ସତେ ଭୂଷଣ କୃଶାଙ୍ଗୁ
ହରଦେହ ଲାବଣ୍ୟ ବର୍ତ୍ତୀ ।
ଫୁଲିଥିବ ଅଶ୍ରୁଉତ୍ସ ଯୋଗେ ତାର
ଅରବିନ୍ଦ ନେତ୍ର ବେନି
ବେଶ ତ୍ୟାଗବଶୁଁ ଏଣେ ତେଣେ ହୋଇ
ପଡ଼ିଥିବ ତାର ବେଣୀ ।
ନୀଳକଣ୍ଠ ପୁଚ୍ଛ ଶୋଭୁଥିଲା ଯହିଁ
ଏବେକି ସେଥିବ ଆଉ ?
ତ୍ରାସିଥିବ ଅହା ! ! ବିଷାଦ ଶ୍ରୀମୁଖେ
ହୋତେ ଯଥା ଦୁଷ୍ଟଗ୍ରହ ।
ସମସ୍ତ ଯାମିନୀ ନିଦ୍ରା ତେଜି ବାମା
ଝୁରୁଥିବ ଏକାମନେ
ଆରକ୍ତ ନୟନୁ ଅଶ୍ରୁନୀର ସଦା
ବୁହାଉ ଥିବ ଲପନେ ।
ଯେ ଅଧରୁ ସୁଧା ପାନ କରୁ ଥାଏଁ
ହୋଇମୁଁ ନିରତେ ଲୋଭୀ
ନଥିବରେ ଶଙ୍କି ! ସେ ଅଧରେ ଆଉ
ନବୀନ ପ୍ରବାଳ ଶୋଭା ।
ଗୋଲାପ ଦଳକୁ ଜିଣି ଥିଲା ଯେଉଁ

ସୁକୁମାରୀ ଗଣ୍ଡସ୍ଥଳ
ନବଣୀରେ ପିକା    ପଡ଼ି ଏବେ ତହିଁ
ଝରୁ ଅଶ୍ରୁ ଅବିରଳ ।
ମୋ ପ୍ରିୟା ଆଗରେ    କହିବ ସମସ୍ତ
ମୋହର ଦୁଃଖ ସନ୍ଦେଶ
ପଢ଼ ପ୍ରାଣା ସେହି    ଏହି ବାର୍ତ୍ତା ଶୁଣି
ଅନନ୍ଦ ହେବ ବିଶେଷ ।
ଧନେଶ୍ୱର ପୁରେ    ଯେତେବେଳେ ତୁମ୍ଭେ
ହୋଇବ ଯାଇ ପ୍ରବେଶ
ଗୋଦାବରୀ ଜାତ –    କୁମୁଦିନୀ ଗଣ
ହୋଇବେ ପ୍ରେମେ ବିକାଶ ।
କିରଣ ଛଳରେ    ତାଙ୍କ ଗଣ୍ଡସ୍ଥଳେ
ଧୀରେକର ପରଶିବ
ପାଖୁଡ଼ା ବିକାଶ –    ଛଳେ କୁମୁଦିନୀ
ଲୋମାଞ୍ଚ ପରି ଦିଶିବ ।
କୈରବଣୀ ଦଳୁଁ    ଖସି ପଡୁଥିବ
ଅଶ୍ରୁ ବିନ୍ଦୁ ସମ ବାରି
ତୁମ୍ଭ ସ୍ନିଗ୍ଧକରେ    ସଧୀରେ ଚନ୍ଦ୍ରମା
ସେ ଅଶ୍ରୁ ଦେବ ନିବାରି ।
ଗୋଦାବରୀ ତୀର–    ବନ–ଲକ୍ଷ୍ମୀ ଅଙ୍ଗ
–ସୁରଭିତ – ସମୀରଣ
ହେଲେ ପ୍ରବାହିତ    ମଣିବ ପ୍ରକୃତ

କରୁଛନ୍ତି ହର୍ଷେ ବ୍ୟଞ୍ଜନ ।
କୁମୁଦିନୀ ଶୋଭା          ଦେଖିଣ ପଦ୍ମିନୀ
ଲଜ୍ଜାରେ ପୋତିବ ମଥା
ନ ପୁଣି ଦିନେଶ          ସଙ୍ଗିନୀ ହୋଇବ
ବୋଲିସେ ଲଭିବ ବ୍ୟଥା ।
କୁମୁଦ ବାନ୍ଧବ !          ତରଙ୍ଗ ମାଳିନୀ-
-ସରିଦ୍ବର-ଗୋଦାବରୀ
ଦେଖିଣ ତୁମ୍ଭଙ୍କୁ          ରଙ୍ଗେ ନଚାଇବ
କୌତୁକେ ମୃଦୁ ଲହରୀ ।
ତୁମ୍ଭର ଉଦୟ—          କାଳରେ ଜଗତ
ହୋଇବ ଆନନ୍ଦ ମୟ
କିନ୍ତୁ ମୋର ପତି-          ପ୍ରାଣୀ ମନୋରମା-
ଆନନ୍ଦ ହେବ ବିଳୟ ।
ସେକାଳେ ମୋହର          ମଧୁର-ଚୁମ୍ବନ
ମନରେ ହେଉଁ ସ୍ମରଣ
ହୃଦେ ଯେଉଁ ଅନଳ,          ଉଠିବରେ ଜଳି
ଦଗ୍ଧକରି ହୃଦବନ ।
ଧନେଶ୍ବର ପୁତ୍ରୀ-          ଯୁବତୀ କାମିନୀ
ବକ୍ଷୋଜ-ଶୋଭା ଲୁଣ୍ଠକ
କୁମୁଦିନୀ - ଶୋଭା          ତୋନେଏ ହରଣ
ହୋଇବ ସ୍ନେହ ଦେଧାତକ ।
କୃପା କର ଯେବେ          ସୁନ୍ଦରୀର ପାଶେ

ରମିବ ସୁଧାଦିଧୀତି

ତୁଙ୍ଗ ଗିରି ଶୃଙ୍ଗ          ଗତିପଥେ ତୋର
ସମ୍ପାଦିବେ ନେତ୍ର ପ୍ରୀତି ।
ନିର ଝର୍ଣ୍ଣେ କ୍ଷୁଦ୍ର-          ବନ୍ଧୁର ସରଣୀ
ହୋଇଥିବ ସୁଶୋଭିତ ,
ତ୍ରାସୁଥିବ, ହରିଣ —          ଶଙ୍କିତା ସୁଷମା
ବାଟେ ହୋଇ ଅନ୍ଦୋଳିତ ।
ପ୍ରତି ଗିରି ଦରୀ          ଭେଦ କରି ନୀର
ବିଷମ ଶିଳା ମଧ୍ୟରେ
କରି ବକ୍ର ଗତି          ମହୀଧର ପାଦ
ଧୋଉଥିବ ନିରନ୍ତରେ ।
ଶାଖା ପରେ ବସି          ବାନରେ ସ୍ୱ କଣ୍ଠ—
—ଲଗ୍ନ ଶିଶୁ ସଙ୍ଗତରେ
ତୋ କରେ ସ୍ୱଚ୍ଛାୟା          କରି ଦରଶନ
କମ୍ପି ଥିବେ ଥରେ ଥରେ (୧)
ଆନନ୍ଦେ ଶୃଗାଳ          ଶାଳୀସ୍ଥ ନକୁଳଙ୍କ

---

(୧) କଥିତ ଅଛି. ଚନ୍ଦ୍ରୋଦୟ ରାତ୍ରିରେ ବାନରମାନେ ବସିଥିବା ସମୟରେ କୌଣସି ହିଂସ୍ରଜନ୍ତୁ ଯଦି ବୃକ୍ଷତଳେ ତାହାର ପତିତ ଛାୟାକୁ ଆକ୍ରମଣ କରେ ତାହାହେଲେ ସେ ତତ୍କାଳ ଭୂପତିତ ହୋଇ ହିଂସ୍ର ଜନ୍ତୁ ଦ୍ୱାରା କବଳିତ ହୁଅନ୍ତି ।

ଶୋଇଥିବ ପ୍ରିୟାସଙ୍ଗେ
ତରୁ ଷଣ୍ଡେ ବସି ବାଘିଅ (୨) ସେକାଳେ
ପାଦପ ଭଙ୍ଗିବ ରଙ୍ଗେ ।
ଶଶୀ ବୟସ୍ତେ ଥାଇଁ ପୃଷ୍ଠଦେଶେ ଶୃଙ୍ଗୀ
ଗଞ୍ଜୁଁଥିବ ସକୌତୁକେ
ଭାବ ମୋ ଜୀବର ଜୀବନ ବଲ୍ଲଭୀ
ଅଛନ୍ତ କାହିଁ ଦଙ୍ଗରେ ।
ଶିଖରୁ ଓହ୍ଲାଇ ଯେକାଳେ ସମ୍ବର
ଆସୁଥିବ ଖଲ (୩) ପାଶେ
ଅଗ୍ର ହୁଲାଧରି ବନ-ଲକ୍ଷ୍ମୀ ପଥ
ଦେଖାଉ ଥିବେ ଉଲ୍ଲାସେ ।
ଏଣେ ବନ୍ୟଜୀବୀ.— ଅନାର୍ଯ୍ୟ ଲଳନା

---

( ୨ ) କାଲ୍ପନିକ ଜନ୍ତୁ ବିଶେଷ ଯାହାର ଆକୃତି ବ୍ୟାଘ୍ରପରି କିନ୍ତୁ ମନୁଷ୍ୟର କେତେକ ସୌସାଦୃଶ୍ୟ ଥିବା ଏବଂ କୃଷିକ୍ଷେତ୍ର ଲକ୍ଷ୍ୟରେ ବନ୍ୟ ଜନ୍ତୁ ଏବଂ ବନଚରମାନଙ୍କୁ ବୃକ୍ଷ ଭଙ୍ଗିବା ଦ୍ୱାରା ଭୀତି ପ୍ରଦର୍ଶନ କରିବା ଅନାର୍ଯ୍ୟ ଶ୍ରେଣୀମଧ୍ୟରେ କିମ୍ବଦନ୍ତୀ ଅଛି ।

( ୩ ) ସମ୍ବରମାନେ ରାତ୍ର କାଳରେ ଲବଣାକ୍ତ ଖଲ ମାଟିଖାଇ ଆସିବା ସମୟରେ ସେମାନଙ୍କର ସମ୍ମୁଖରେ ବନ ଲକ୍ଷ୍ମୀ ଗୋଟିଏ ଜ୍ୱଳନ୍ତ ପ୍ରଦୀପ ଧରି ଅଗ୍ରେ ନଗ ଜଙ୍ଗଲ ଛଡ଼ାରେ ଗମନ କରୁଥିବାର କିମ୍ବଦନ୍ତୀ ଅଛି ।

ଅରଣ୍ୟ ପୁଷ୍ପ ସ୍ତବକେ
ହୋଇ ବିମଣ୍ଡିତ କରେ ଛନ୍ଦ କର
ମତ୍ତ ଥିଲେ ହିଲ୍ଲି ଷକେ ।
ସେତ୍,ମଣୀଙ୍କର ରମଣୀୟ ନୃତ୍ୟେ
ମୁଗ୍ଧ ହେଲେ ତୁମ୍ଭ ମନ
ନିଶାମଣି, ଥରେ କରିବ ସେକାଳେ
ସ୍ମରଣ ମୋ ନିବେଦନ ।
ଏହି ଶୋଭା ଦେଖି ଚଳିବ ଚନ୍ଦ୍ରମା
ଯହିଁ ମୋର ପ୍ରାଣେଶ୍ୱରୀ
କହିବ ମୋହର ଦେଖିଛୁ ଯେଦଶା
ସବୁ ଏକ ଏକ କରି ।
ଝଙ୍କାରିଣ ବ୍ୟୋମ ଅମର ମିଥୁନେ
ଗାଇବେ ଯେବେ ସଙ୍ଗୀତ
ଶୁଣିଣ ବିମୁଗ୍ଧ ହୋଇ କାନ୍ତାପାଶେ
ଗମିବ ତୁମ୍ଭେ ତ୍ୱରିତ ।
ବଟ ପାଦପରେ ଚକୋର ଚକୋରୀ
ସଙ୍ଗୀତ ସୁଧା ଲହରୀ
ତାଳ କ୍ଷଣେ କ୍ଷଣେ ଉଡ଼ୁଥିବେ ନଭେ
ଜ୍ୟୋତ୍ସ୍ନାମୃତ ପାନକରି ।
ମୋ ବାଳାମଣିର ବିଳାସ ଉଦ୍ୟାନ
ଦେଖିବ ନିଶ୍ଚେ ଚନ୍ଦ୍ରମା
ଏବେ ମନୋରମା ଆଦର ବିହୀନେ

ଥିବକି ତାର ସୁଷମା ?
ପଲ୍ଲବ - ଭଙ୍ଗରୁ - ବିହୀନ - କୁସୁମ
ତୋଳିଣ ସେ ଉପବନେ
ଗିରୁଖୋଷା ପାଟେ ଖୋଷି ଗୋଟିକର
ଗଞ୍ଜୁଣ ଥାଏ ଯତନେ ।
ଅକାଳରେ ପୁଷ୍ପ - ବର୍ଷା ହେଉଥିଲା
ଯେରମ୍ୟା ଶୋକମଞ୍ଜରୀ
ନପାଇ ପ୍ରମଦା ପାଦ ଘାତ ସେହି
ଫୁଟୁଥିବ ପୂର୍ବ ପରି ?
ସ୍ଫୁରିତ ହୁଅଇ ଯେଉଁ କୁରୁବକ
ରମଣୀ କଟାକ୍ଷ ପାତେ
ମଳିଣ ସେ ଏବେ ହୋଇଣ ଚନ୍ଦ୍ରମା
ଝୁରୁଣ ଥିବ ଏକାନ୍ତେ ।
ଏହି ଶବଦେଖି ଛାଣିବ ଚନ୍ଦ୍ରମା
ମୋହର କାନ୍ତା ଭବନ ।
ଗାଇବାକୁ ବନ୍ଧୁ - ଦୁଃଖ ବାଲାପାଶେ
କରିବ ତହିଁ ଗମନ ।
ମୋରବାର୍ତ୍ତା ଘେନି କାନ୍ତା ସମୀପକୁ
କରିବ ଯେବେ ଗମନ ।
ଶୁଭ ସନ୍ଦେଶରେ ରମଣୀ - ମଣିର
ସ୍ଫୁରିବ ବାମ ନୟନ ।
ବାତାୟନ ପାଶେ ଶ୍ୟାମାମଣି ଯେବେ

ନିଦ୍ରାରେ ମଗନ ଥିବ ।

ପଙ୍କଜ ସାଦୃଶ୍ୟ　　ବସ୍ତଗ ନୟନ

　　ମୁଖ ତାର ପରଶିବ ।

ତୁମ୍ଭର ଶୀତଳ　　ମୟୂଖ ପତନେ

　　ତୁମ୍ଭେ ନ ମନରେ କରି

ତାହାଙ୍କୁ ଲଜ୍ଜିତା,　　କଣ୍ଠେ ମୋର ସ୍ୱପ୍ନେ

　　ଜଡ଼ୁଣ୍ଡି ଥିବ ସୁନ୍ଦରୀ ।

ତୁମ୍ଭସ୍ପର୍ଶେ ତାର　　ନିଦ୍ରାସଙ୍ଗେ ସ୍ୱପ୍ନ

　　-କେଳି-ସୁଖ ଗଲେ ଭାଙ୍ଗି ।

ତୁମ୍ଭଙ୍କୁ ସ୍ୱକରେ　　ପାଇ ହଟାଇଲା

　　ପଶ୍ଚାଏ ହେବ କୃଶାଙ୍ଗୀ ।

ଜଳୁଥିବ ଯେଉଁ　　ଚିତା ରୂପି ଚିନ୍ତା

　　ଯୋଡ଼ତା ହୃଦ କାନନ ।

ମୋର ବାର୍ତ୍ତାକହି　　ଲଭିଇ ସଘନେ

　　ତୋଷିବ ତାହାର ମନ ।

କହିବ ପ୍ରିୟାକୁ　　ତୋପାଇଁ ତୋ ନାଥ

　　ହୋଇଅଛି କୃଶ ତନୁ ।

କୁସୁମ କାର୍ମୁକ　　ଚମକାଇ ତାକୁ

　　ହାଣୁଛି ସଦା ଅତନୁ ।

ଦହୁଅଛି ହୃଦ —　　ବନ୍ଧ ନିରନ୍ତରେ

　　ବିରହ - ବନ ହୁତାଶ

ନୟନୁ ବହୁଛି　　ଲୋତକର ଧାର

ନାସାରୁ ତପତ ଶ୍ୱାସ ।
ହଂସ୍ର ଚତ୍ର ଝାତ                ନରଣି ତରୁଣ
ଭ୍ରମୁଛି ବନ୍ଦନ ବନେ ।
'ମନୋରମା' 'ମନୋ- ରମା' 'ମନୋରମା'
ବୋଲି ସୃଣୁଅଛୁ ମନେ ।
ପ୍ରତକୁଳ ବାତେ                କାସ୍ୟମାନ ଧ୍ୱଜ
ଚନାଂଶୁକ ପ୍ରାୟ ମନ
ଓଟାଉ ହେଉଛି                ତୋଅତେ ସର୍ବଦା
କରୁଛି ଯହିଁ ଗମନ" ॥
ଉଠିଲ ହୃଦୟେ                ଯେତେ ଯେତେକଥା
ଗାଇଯୁବା ବାର ମ୍ଭାର
ଚନ୍ଦ୍ରମା ଛମୁରେ                ଏକୁଟେ ଲାଘବ
କଲାନଛ ଦୁଃଖଭାର ॥
କହିଁ କହିଁ ଶ୍ଳୋକ —    ଅଗ୍ରୁରେ ବାଗଣ୍ଡି
—ପ୍ରେମିକ ପ୍ରେମ ସନ୍ଦେଶ
ପ୍ରତଚ ଅଚଳେ                ଅସ୍ତହେଲେ ଦେବ
ଲୁମୁଦନୀ ହୃଦୟେଶ ॥
ହୃଷ୍ଟହେଲ ଯୁବା                ହୃତକାର୍ଯ୍ୟେ ଶଶି
ଗଲେ ଚାଏ ଅନୁମାନ ।
ବାଞ୍ଛା ଅନୁକୂଳେ                ସବୁକଥା ଲୋକେ
କ. ଅନ୍ତ ବିନା ବଖାଣି

ସମାପ୍ତ ।

# ବିବିଧ କବିତା ।

---

## କିପରି ସ୍ତୁତିବି ।

କି ବୋଲି ସ୍ତୁତିବି ପ୍ରଭୁ ସର୍ବଗୁଣାଧାର !
ସଂସାର ର ସାର ମଧ୍ୟେ ତୁମ୍ଭେ ଶ୍ରେଷ୍ଠସାର ;
ସ୍ତୁତିବି କିପରି ମୁହିଁ ବୁଝିବି କିପରି ?
ତୁମ୍ଭର ଅନନ୍ତ ଶକ୍ତି, କେବେକି ଶପଣ୍ଡି
ବୁଝିଛି କି ଦୂରସୀମା ଯାହାର ପରର ?
ପତଙ୍ଗ ବୁଝେଁକି କେବେ ସୀମା ପୃଥିବୀର ?
ବୁଦ୍ଧି-ସୀମା-ବହୁଦୂରେ ତବସୀମା ଦେବ !
କି ବୋଲି ସ୍ତୁତିବି ମୁହିଁ ତୁମ୍ଭେ ଦେବଦେବ ?
ଅନନ୍ତ ଶାଶ୍ୱତ ତୁମ୍ଭ ତନ୍ମୟ ରହସ୍ୟ
କି ବୋଲି କରିବି କାହା ସଙ୍ଗରେ ସାଦୃଶ୍ୟ ?
କାହା ଦେଖି ଲିପ୍ତ ହେବ ଏ ଜଡ ହୃଦୟ ?
କିପରି ଲଭିବ ନିରାଧାର ରେ ଆଶ୍ରୟ ?
ନାହିଁ ଯାର ଲେଖା ସୀମା ନାହିଁ କଳେବର ,
ସ୍ତୁତିବି କି ବୋଲି କେଉଁ ଭାଷାରେ ମୋହର ?
ଯା'ର ସତ୍ତା ଅଟେ ନିତ୍ୟ ଭାଷା ଅଗୋଚର ,
କି ବୋଲି ସ୍ତୁତିବି ମୁହିଁ ସେ ଦେହ ସୁନ୍ଦର ?

ନାହିଁ ଯାର ପାଦ ପାଣି ଶ୍ରୀମୁଖକମଳ,
କିବୋଲି ଖଞ୍ଜିବ ମୁହିଁ କଠକ କୁଣ୍ଡଳ ?
ତୋଷିବ କିପରି ଆଦ୍ୟଗୁରୁ ଜଗତର ?
ସ୍ତୁତିରେ କି ତୁଷ୍ଟ ହେବେ କର୍ମୀ ଧୁରନ୍ଧର ?
କର୍ତ୍ତବ୍ୟ ପାଳନ କରି ତୋଷିବି ଈଶ୍ବର,
କର୍ତ୍ତବ୍ୟେ ଈଶ୍ବର-ସତ୍ତା, କର୍ତ୍ତବ୍ୟ ଈଶ୍ବର ।

—∞*:O:*∞—

## ଭୁବନେଶ୍ବର ।

ପାଷାଣ କରନ୍ତୁ ମୋତେ ପାଷାଣର ପରି
ଗତିହୀନ, ସ୍ତବ୍ଧ, ମୂକ, ସ୍ପନ୍ଦନ-ବିହୀନ,
ହେରି ଦିବ୍ୟ ସ୍ତରେ ସ୍ତରେ ଶିଳ୍ପ ମାଧୁରୀ ଜାଲ
ବିଶାଳ ଦେଉଳ ଦେହେ ଏକାମ୍ର କାନନେ ।
( ନିତ୍ୟ କେଳିରତା ଯହିଁ ଭୁବନ ମୋହିନୀ
ଏକାମ୍ରଚାରିଣୀ ଦେବୀ ବିଦ୍ୟାଧରୀ ସଙ୍ଗେ )
ଏହି କି ଦେଉଳ ନୁହେ ! ପାଷାଣର ଫୁଲ ?
ପୁଷ୍କକୁଣ୍ଡ ରୂପେ ଯହିଁ ଦେବ ଉମାପତି,
( ଭକତ ମିଳିନ୍ଦମାଳା ଭକ୍ତି-ରସ ପାନେ
ବେଷ୍ଟିତ ଏକାମ୍ର କୁଞ୍ଜେ ପୂଜିବାକୁ ଯହିଁ,
କରୁଣା ରୂପିଣୀ କାତ୍ୟାୟନୀ ପାଦଯୁଗ )
ଲାବଣ୍ୟବତୀ - ଲାବଣ୍ୟ ଦୁକୂଳର ଛାୟା
ପଡିବାରୁ ସିନା ଅଙ୍କ ଏ ଦେଉଳ ଦେହେ

ଦ୍ୱିଗୁଣ ବଢ଼ାଏ ଶିଳ୍ପୀ-ଶିଳ୍ପର ଗାରିମା ;
କମ୍ପାଇ ପ୍ରାନ୍ତର ଥରହର ଘଣ୍ଟା ଯନ୍ତ୍ରଁ
ନାଦେଶ ବିଳାପ - ଆରତ୍ତ ଭୁବନ ଭିତରୁ
ବାପ୍ପୁସଙ୍ଗେ ଭାଷିଯାଏ ବନ୍ଦୁଁ ଅନ୍ୟବନେ
ପୂତ କର ଧରିତ୍ରୀର ସ୍ଥାବର ଜଙ୍ଗମ ।
ଧନ୍ୟ ମା ଉତ୍କଳ ! ତୁମ୍ଭେ ପୋଷିଛୁ ଯତନେ
ନଶ୍ୱର କୀର୍ତ୍ତିଗ୍ରନ୍ଥି ଅନଶ୍ୱର କରି ।
ଧନ୍ୟ ସେହୁ ମହାଯଶା କେଶରୀ-ଗୌରବ,
(ମୂକ ସାକ୍ଷୀ ରୂପେ ଯାର ଏ ଦେଉଳ ସଙ୍ଗେ)
ପୁଣି ଶତ ଧନ୍ୟ ତାଙ୍କ ସ୍ୱଚ୍ଛ ଧାର୍ମ୍ମିକତା ।

— — ✻ — —

ଯୋନପୁର-ଯୁବରାଜ ଆୟୁଷ୍ମାନ୍ ଶ୍ରୀମନ୍
ଶ୍ରୀ ଶ୍ରୀ ସୋମଭୂଷଣ ସିଂହ ଦେଓ ବର୍ମ୍ମା-
ଙ୍କର ଶୁଭୋପନୟନ ଉପଲକ୍ଷେ
ରଚିତ ।

ଝିଞ୍ଜିଟ୍-ଏକତାଳୀ ।

ଯୁବରାଜ ଆଜ ଦ୍ୱିଜରାଜ ହେବେ
ସ୍ୱଣ୍ଡିପୁର ଜନପଦରେ
ଚିତ୍ରୋତ୍ପଳା ତୀର ସରସ୍ୱତୀ-କୂଳ
ବହଇ ସମସ୍ପନ୍ଦରେ । ପଦ
ଚୌହାନ-ତିଳକ ସୋମ ଭୂଷଣ-

କୋମଳ ହୃଦୟ-ତନ୍ତ୍ରୀ ପାବନ
ନିଷ୍ପଭ ଛନ୍ଦରେ ବାଜ ଉଠିବରେ
ଶାଶ୍ୱତ 'ଭୂମା' ଶବଦରେ । ୧
ଉଦ୍‌ବୋଧିନୀ ଉଷା ଯଥା ସେକାଳେ
ମନ୍ତ୍ରି ମୋହିଥିଲା ଜନ ସକଳେ,
ମୋହଉ ତେସନ ଦବ ହୃଦମୋହନ
ତରଳ ଜ୍ୟୋତି ଅଭେଦରେ । ୨
ଦେବୀ ଭଗବତୀ ଶ୍ରୀମହାରାଣୀ
ପୁଲ୍ଲକିତା ପୁଣ୍ୟବତୀ କଲ୍ୟାଣୀ,
ପୁତ୍ରୋତ୍ସବେ ମାତ ସେହ୍ନ ଅଯୁକ୍ତଣୀ
ଲଭନ୍ତୁ ଆଜ ସମ୍ପଦରେ । ୩
ନିଦ୍ଧ ବରେଣ୍ୟ ଭର୍ଗ ଦେବତା
ହିରଣ୍ୟାଂଶୁମାଳୀ ଦେବ ସବିତା
କରନ୍ତୁ ପ୍ରଦାନ— ନଉ ନବ ଜ୍ଞାନ
ନବ ବିଜୟୀ ଜ-ହୃଦରେ । ୪
ସୁକାନ୍ତ - ତନୂଜା-ଲୋଳ-ହିଲ୍ଲୋଳ
ପ୍ରକାଶିବ ଭେଦ ଜ୍ୟୋତି ତରଳ
କାଳଦେବୀ କୂଳ ସର୍ବେ ବୋଲଉଲ
ପ୍ରଣମିବେ ବ୍ରହ୍ମ ବାଧ୍ୟରେ । ୫

—*୦*—

୨

# ଆଲେଖ୍ୟର ପରିଚୟ ।

ଭାଇ !
ଚିହ୍ନୁନାହଁ ? ଏହି ସେହି ବଳ୍କଳ ବସନା
ଲଳନା ଲଲାମ ଦେବୀ ପୌରବ-ମୋହିନୀ
ମେନକା-ଗର୍ଭ-ସମ୍ଭୂତା ଶକୁନ୍ତ--ଲାଳିତା
ବୈଶ୍ୱାମିତ୍ରୀ ଶକୁନ୍ତଳା, ଜନ୍ମିଲେ ଯା କୋଡ଼େ
ଅବାନ୍ତ ଦମନ 'ସର୍ବଦମନ' କୁମାର
ଅଦିତି-ଆଶ୍ରମେ, ଲଭି ଦିବ୍ୟ ତେଜଃ ପୁଞ୍ଜ

---

※ ବାମଣ୍ଡାଧୀଶ୍ୱର ଶ୍ରୀମାନ୍ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ମହୋଦୟଙ୍କ ପ୍ରଥମ ଭ୍ରାତା ଶ୍ରୀମାନ୍ ବଳଭଦ୍ର ଦେବ ବଡ଼କୁମାର ମହୋଦୟ "ଶକୁନ୍ତଳାପ୍ରତି ଦୁର୍ବାସାଙ୍କର ଅଭିଶାପ" ଚିତ୍ରପ୍ରତି ଲକ୍ଷକରି ଗୋଟିଏ କବିତା ରଚନା କରି ସମ୍ବଲପୁର ହିତୈଷିଣୀ ପତ୍ରିକାସ୍ଥ କରିଥିଲେ । ନିମ୍ନାଙ୍କିତ ସେହି କବିତାକୁ ଲକ୍ଷକରି ଉପରୋକ୍ତ କବିତାଟି ଲିଖିତ ହୋଇଅଛି ।

"କୌଣସି ଆଲେଖ୍ୟପ୍ରତି"

କେ ଗୋ ! ତୁମ୍ଭେ ପୁଣ୍ୟମୟି ! ବଲ୍କଲ ବାସନା !
ବସି ଅଛ ଶିଳାସନେ ଗଣ୍ଡେ କର ଥୋଇ ?
ମହାଧ୍ୟାନେ, ସୁକୁଞ୍ଚିତ କେଶପାଶ ପିଠି

ସ୍ଫୁରିତ-ପ୍ରଥିତ ଯଶା ଦୁଷ୍ମନ୍ତ ପାଶରୁ ।

ଭାଇ !

ସେହିସ୍ଥାନ, ଦେଖିଥିଲେ ଯେଉଁ ଧ୍ୟାନବଳେ
କୌମାର ହରିଙ୍କୁ ଥରେ ମାଳିନୀ-ତଟରେ ;
ପୁଞ୍ଜିଭୂତ ପଞ୍ଚେନ୍ଦ୍ରିୟ ଆଜ ସେ ମାନସେ
ଧ୍ୟାନ ଧାରଣାର ଭାଇ ! ଯେଣୁ ଏ ସ୍ୱଭାବ ।

ଭାଇ ! ଚିହ୍ନୁ ନାହିଁ ?
ଯମଦଣ୍ଡ ମୂର୍ତ୍ତିମନ୍ତ ଦୁର୍ବାସା ମୁନିଙ୍କୁ ?
ଉଦ୍ଭବେହ ତନ୍ମୟମଗ୍ନା ବିଚ୍ଛେଦିନୀ-ପାଶେ ।
ହେଲାଇ ତର୍ଜ୍ଜନୀ ଗର୍ଜ୍ଜେ, ରୋଷେ ବୁଭୁକ୍ଷିତ-
ଦୁର୍ବଳ-ସଂହାରୀ ଦୁଷ୍ଟ ନିର୍ମ୍ମମ ତରକ୍ଷୁ-

---

ଗର୍ଜ୍ଜଇ ଚରମେ, ଯଥା ସୌଦାମିନୀ ପୃଷ୍ଠେ
ପୟୋଧର, ପଲକ ତ ଗଲାଣି ପାଶୋରି
ଅପୂର୍ବ ଚଞ୍ଚଳ ଗତି ବିଲୋଚନ ବେନି
କେଉଁ ସ୍ଥାନେ, ବାହ୍ୟବସ୍ତୁ ଯେତେ ସମ୍ମୁଖର
ଅତିକ୍ରମି ତବ ମନ ବିରାଜୁଛି କିନା
ହୃଦପଟେ ସୁଚିତ୍ରିତ ସେ ମଞ୍ଜୁ ମୂର୍ତ୍ତିରେ,
କର୍ଣ୍ଣଆଦି ପଞ୍ଚେନ୍ଦ୍ରିୟ କ୍ରିୟାମାନ ଯେଣୁ
ପୁଞ୍ଜିଭୂତ ହୋଇଅଛି କେବଳ ମାନସେ,
ଏରୂପେ ତନ୍ମୟ ହୋଇ ପାଶୋରି ନିଜକୁ
ରହିଅଛ କାହାସ୍ଥାନେ ? କି ଲାଗି ରୂପସୀ ?
କହ କି ଗୋ ତୁମ୍ଭେ ? ବସି ବିବିକ୍ତ ସ୍ଥଳରେ

ସରୁଏ (ଯେକାଳେ ଅସେ ମଢ଼ଅନ୍ୱେଷଣେ)
ଦେଖିଅଛୁ ବହୁବାର ମୋହର ସଙ୍ଗତେ
ମୃଗୟା ବିନୋଦେ ବନ ପ୍ରାନ୍ତରେ କନ୍ଦରେ ;
ଧର୍ମ୍ମ ଦ୍ରୋହୀ କ୍ରୂରଚକ୍ଷୁ ବୁଲେ ନେଇ କ୍ରୋଡେ,
ଭ୍ରୂକୁଟିର ସହଚର କୁଟିଳ ଭ୍ରୂଲତା
କାଳ-ଭୁଜଙ୍ଗିନୀ ସମ ଖେଳଇ ଲଲାଟେ ;
ବହୁଅଛି ଖରତରେରୌଦ୍ର ଜ୍ୱର ସମ
ତପତ ନିଶ୍ୱାସ ଘୋଣ ବିବର ଭିତରୁ ;

---

ଏକମନେ କରୁଅଛ ବାଣୀ-ଆରାଧନା ?
ତେବେ କିପାଁ କହଦେବ ! ବାଞ୍ଛିତ ବିଷୟ
ସମୁଦିତ ହେବାଇଣି ସେ କବି-ମାନସ
ହୃଅର ପ୍ରଫୁଲ୍ଲ ଯଥା, ତେସନ ମଧୁରେ
ବିମ୍ବିତ ହେଉନାହିଁତ ଆନନ୍ଦର ଚିହ୍ନ
ବଦନ ମୁକୁରେ ତବ ; ଅବା ଶୂନ୍ୟମନେ
ଧ୍ୟାଉଛନ୍ତ ସୃଷ୍ଟି ତତ୍ତ୍ୱ ? ଅବା ପରକାଳ ?
ଅଥବା ଶାଶ୍ୱତ ଚିନ୍ତା ଉଠଇଁଛି ମନରେ ?
ନା ନା, ତା ନୁହଇ ଯେଣୁ ଦେଉଅଛୁ ଛାଡ଼ି
ଭୂମୂର ବସିବା ଭଙ୍ଗି, ଗଣ୍ଡନ୍ୟସ୍ତ ପାଣି,
ପୁଣି ବକ୍ର ମୁଖଛବି, ପ୍ରିୟ ଚିନ୍ତା ବୋଲି,
ଅହୋ ! କି ଗଭୀର ଧ୍ୟାନେ ରହିଛ ମଉନେ !
ଦେଖୁନାହିଁ, ଆଗେ ତବ କାଳସର୍ପ ରୂପୀ
ମୂର୍ତ୍ତିମନ୍ତ କ୍ରୋଧ ପର କରାଳ ମୂରତି

(୨୨୪)

( ତାପସର ବିଗର୍ହିତ ଏହି କ୍ରୂର ରୀତ ) ।
ବ୍ୟାଳୀ-ମୁଖୁଁ ଉଦ୍ଗାରିଲ ବିଷଜ୍ୱାଳା ପରି
ଅପବର୍ଗ ଶାପ-ହଳାହଳ ଋଷିମୁଖେ
ମଉଳିଲ ଆଶାଲତା ରମଣୀ ମଣିର ;
ଧନ୍ୟ ସୁଦର୍ଶନ ଯେବେ ହାସିଥିଲ ମୁନେ
ଦ୍ୱାପରେ, ବାହାଅ ହର ଶ୍ରୀକର ପଙ୍କଜୁଁ
( କ୍ରୂର ଠାରେ କ୍ରୂର କର୍ମ୍ମ ଯେଣୁ ଧର୍ମ୍ମନୀତ )
କେବଳହିଁ ଶିବାଶରେ ଜନ୍ମ ସେହିମୁନି ?
କାହିଁ ? ନାହିଁତ ଶିବଦ ? ଅମଙ୍ଗଳ ସବୁ !

---

ଏକାଏ ସେ, ଦୃଢ଼ମୁଷ୍ଟି ବଦ୍ଧ ବାମକରେ
ତପ୍ତଠି ନୟନବେନି ଅରୁଣ ବରଣ
ତର୍ଜନୀ ସଙ୍କେତେ ସ୍ରେଷେ ଦକ୍ଷିଣ ପାଣିରେ
ତର୍କୁଅଛି ; ଜଟାଜୁଟ ଦୋହଲେ ମସ୍ତକେ,
ଘନ ଘନ ଦୀର୍ଘଶ୍ୱାସେ କମ୍ପୁଛି ଆଗରେ
ଶ୍ମଶ୍ରୁରାଜି, ରୋଷାଗ୍ନିର ଶିଖାମାଳ ପରି ;
ଅହୋ ! ଅହୋ !! କିଦାରୁଣ ଚଣ୍ଡକର୍ମ୍ମା ଋଷି,
ଭୀଷଣ ଅଗ୍ନେୟଗିରି ଉଦ୍ଗାରଇ ଯଥା
ଅସହ୍ୟ ରୋଷକାନଳ, କହିଲେ ତେମନ-
“ମୋପରି ଅତିଥିଜନେ କର ଅନାଦର
ଏତେ ସ୍ପର୍ଦ୍ଧା ତୋର, ଭୁଲି ମଜ୍ଜିଲୁ କା ଧ୍ୟାନେ ?
ଯାଉ ସେ ପାଶୋରି ତୋତେ, ଚିନ୍ତୁ ଯାହାକୁ ।”

ଉଚ୍ଛୁଳ ଛୁଇଁଲା ହର୍ଷ ପ୍ରିୟମ୍ବଦା-ହୃଦେ,
ସମୁଦ୍ର ମନ୍ଥନୁଁ ଭଇ ! ଯଥା କାଳକୂଟ
ବାହାରି, ସୁଫଳା ରମ୍ୟା ମଳୟ ଶୀତଳା
କରୁଥିଲା ଧରଣୀକୁ ମରୁ-ପରିଣତ,
ଦେଇ ଦାରୁଣ ବେଦନା ବସୁଧ ମଣ୍ଡଳେ ;
କିନ୍ତୁ ନ ଛୁଇଁଲା ବାଳା-ହୃଦ ସେହିକାଳେ,
କିଳିଥିଲା ପ୍ରେମମନ୍ତ୍ରେ ଯେଣୁ ତାରଦେହ ।

ଅଗ୍ନିସୃ

—୦—

ଶାପ ଦେଲେ ଏହା ବୋଲି ମହା ଅଭିମାନେ
ଅଭିମାନୀ, ଅବଜ୍ଞରେ ନିର୍ଦ୍ଦୋଷୀ ବାଳାକୁ,
ସୁପ୍ତଜନେ ଦଂଶେ ଆସି ଭୁଜଙ୍ଗ ଯେସନ ;
ମାତ୍ର ପ୍ରିୟଚିନ୍ତା ମଗ୍ନ ଯୋଷାମଣି କର୍ଣ୍ଣେ-
ପଶିଲା ନାହିଁତ ଭୀମ ବଜ୍ରନାଦତୁଲ୍ୟ
ଋଷି-ଶାପ, କାଳାନଳ ତେଜ ସୁଦୁଃସହ ;
ଧନ୍ୟ ସେହି ଭଗବାନ, ଯାର ପ୍ରେମମନ୍ତ୍ରେ-
ଦୀକ୍ଷିତା ଏସନ ଧନ୍ୟା ରମଣୀରତନ ।

ଶ୍ରୀବଳଭଦ୍ର ଦେବ ।

—*:୦:*—

# ପରଲୋକଗତା କନ୍ୟା ପ୍ରତି ।

ନାହିଁକି ମା ! ସେହି ପରକାଳ ?
ଭେଟିବି କେବେ ମା ! ତୋତେ ସେ ଅମର୍ତ୍ତ୍ୟଧାମେ ?
ଚୁମ୍ବିବି କୋମଳ ଗଣ୍ଡ ଚୁମ୍ବିବି ଅଧର !
କେତେବାର ସ୍ନେହେ ମା ! ତୋ ବକ୍ଷ ଦେଖାଇ
ପିଇଉ ଆଦରେ ସ୍ତନ୍ୟ, ଯେସନ ବାତ୍ସଲ୍ୟେ
ପିଆଉଥିଲେ ଆଦରେ ଜନନୀ ମୋହର ।
ନାହିଁ ମନେ ମାତୃସୁଖ, ସେ ସ୍ନେହ ଉଦାର,
ମାତୃଅଙ୍କ ଭ୍ରଷ୍ଟ ଦୁଃଖ- ଜୀବନ ମୋହର ;
ମାତୃହୀନ ବୋଲି ମୁହିଁ ମାତୃ ଉପଗ୍ରେ
ତୋଷୁଥିଲି ମମ ଘୋର ଅନ୍ଧାର ଜୀବନ ।
ଅନ୍ଧାରୁଁ ଅନ୍ଧାରତର କରିଲଣି କାଳ
ନିର୍ମ୍ମମ ଭେଦବିନାଶୀ-ମସି-ପ୍ରଲେପନେ ।
ଯିବ ମା ! ଅନ୍ଧାରଟି, ସେ ମହାଅନ୍ଧାର
ଆସିବ ଯେକାଳେ ଧରି ବେଗ ସହଚରୀ
ମହାନିଦ୍ରା ଦେବୀ ଦିବ୍ୟ ବିଶ୍ରାମ ଦାୟିନୀ ;
ରାଜ୍ୟ, ରାଜଭୋଗ ପୁଣି ବିଳାସ ବାସନା

---

ରାଜଜେମା ମହାକାନ୍ତୀ ଦେବୀ ଅକାଳରେ ଆତ୍ମୀୟ ସ୍ୱଜନ ସମସ୍ତଙ୍କୁ ଦୁଃଖ ସାଗରରେ ଭସାଇ ପରଲୋକ ଗମନ କରିଥିଲେ । ତାହାଙ୍କର ବାର୍ଷିକ ପରଲୋକ ଗମନ ଦିବସରେ ଲିଖିତ । ପ୍ରକାଶକ

ଭୁଞ୍ଜମୋରେ ।

ଏଇ ଅନ୍ଧକାରେ ମାମା ! ଦୀପ ସ୍ୱରୂପିଣୀ
ଉଜ୍ଜଳୁଛୁ ସ୍ମୃତି ତୋର, ପୁଣି ସେଇ ଶିଖା
ଦେଖାଉଛି ମୋରେ ତୋର ନିତ୍ୟ ଧାମ ପ୍ରତି ।
କିପରି ମା ! ନିତ୍ୟ ଧାମ ? ଭେଟିବି କେବେ ମା !
ସତେକି ମା ! ସୁଖ ଅଛି ସେଇ ନିତ୍ୟ ଧାମେ ?
କିପାଇଁ କେବେରେ ମାମା ! ତୋ ସମାଧି ପାଶେ
ରଖିଲି ସଜାଡ଼ି ପୀଠ ଅନ୍ତିମ-ଶୟନ-
"ଶ୍ମଶାନ ଭୌତିକ ଦେହ ନିର୍ବାଣ ଦେହଳୀ ।"
ଦେଖ ମା ! ନୟନ ଦେଇ ଶାନ୍ତି-ନିକେତନଁ
ଦୁଃଖ-ଦଗ୍ଧ ଜୀବନ୍ମୃତ ଜନନୀ ତୋହର
ଚିନ୍ତା ଦଂଶନ ଦଶା- ମଳିନା ବିବଶା ।
ମାମା !
ଅଙ୍କ ଯେ ବାସର ତବ ଅନ୍ତିମ-ଶୟନ ;
ଭୁଲିଥିଲି ମାମା ! ତୋର ଅଙ୍କ ଉପରରେ
ପୁତ୍ର ପ୍ରପୌତ୍ର-ପାଳିତ ଜୀର୍ଣ୍ଣ ହସ୍ତ ତୋର
ଅର୍ଚ୍ଚିବ ଆଦରେ ମୋରେ ପିତୃ ପ୍ରେମାଦରେ ;
ଧନ୍ୟରେ ନିର୍ମ୍ମମ କାଳ ! ସର୍ବକଷ ଭୁଞ୍ଜି
ଧିକ ତୋରେ, ଧିକ ମୋର କଠିନ ପରାଣ !
ଥାଅ ମା ! ବିମଳମନେ ସ୍ୱର୍ଗସିଂହାସନେ
ଲଭିଥିବ୍ୟ ପୁଣ୍ୟ ପୁଞ୍ଜ ତ୍ରିଦଶ ମେଳରୁ ;
ଶାନ୍ତିମୟି ! ଦଗ୍ଧ ପ୍ରାଣ ଏବେ ତୋ ବିହୁନେ ;

ଅନ୍ତିମ କାଳରେ ମାମା ! ତୋ 'ବ୍ରହ୍ମ ସ୍ମରଣ'
ପାରିଜାତ ପୁଷ୍ପ କୁଣ୍ଡେ ପରାଗ ପରାଏ,
ପ୍ରଚ୍ଛନ୍ନ ; ଥିଲା ଏ ବାଣୀ କରିବାକୁ ସିନା
ଜୀବନ୍ମୃତ, ଶୋକଦଗ୍ଧ ଜନନୀ ଜନକେ !
ପାରିଜାତ କେବେ ନୁହେ ଧରାର ଭୂଷଣ,
ଭାସ୍ୱର କୌସ୍ତୁଭ ସଙ୍ଗେ ଚିରସଙ୍ଗି ସିନା ;
ଗାଅ ମା ! ପବିତ୍ର ଗୀତ ଅମର ଭବନୁଁ ।
ମାମା !
ତୋ ମୁଖ-ଭାରତୀ ଅର୍ଦ୍ଧ ଅସ୍ପଷ୍ଟ ଶବଦେ
ଝଙ୍କାରିବ ଦିବ୍ୟ ଲୋକ, ଶୁଣିବେ ଅମରେ !
ସନ୍ତୋଷିବୁ ପୁଣି ତାଙ୍କେ ଗାଇବୁ ଯେକାଳେ ;
ଗାଅ ମା ! ଅସ୍ପଷ୍ଟ କଣ୍ଠେ ସେହି ପୁଣ୍ୟଗୀତ
ଅନ୍ତିମ କାଳର ତୋର ସ୍ୱରଗ ନିନାଦୁ,
ପୁଣ୍ୟମୟ, ଶାନ୍ତିମୟ ବିଧାତା-ନାମରେ । *

କନ୍ୟା-ଶ୍ରାଦ୍ଧ-ବାସର
୨୧-୧୦-୧୯୧୧ } ତୋର ବବା!

---

* ମୃତ୍ୟୁର ଦୁଇଘଣ୍ଟା ପୂର୍ବେ ହାତ ଯୋଡ଼ିକରି "ହେ ନାରାୟଣ ମତେ ନେଇଯା" ବୋଲି କହି ନିସ୍ତବ୍ଧ ରହିଲେ ; ଏହି ଉକ୍ତି ସ୍ୱଜନପରିବାର ବର୍ଗଙ୍କର ମନରେ ଚିରଦିନ ସ୍ମୃତି ପଥାରୂଢ଼ ହୋଇ ରହିବ ।

# ବସନ୍ତ ନିବାସର

## ଉଦ୍ବୋଧନ । *

(ଅମିତ୍ରାକ୍ଷର ଛନ୍ଦ)

ସାରସ୍ୱତ ଉପବନ ବିହାର ରସିକ
ଦେବଦୁର୍ଗ-କବିକୁଳ, ଶାଶ୍ୱତ ନୟନେ
ଦେଖୁଥିଲେ ପ୍ରଭାମୟୀ ନିର୍ଝରିଣୀ ବେଣି,
ପବିତ୍ର ଅମଳ ହରଶ୍ରୋଳ ହିମବାନ-
ଗଙ୍ଗା ଉପବୀତ ସମ ପ୍ରକୃତ ଆଲେଖ୍ୟ ;
ଶୀକର ଜଳଦ ଘଟା ପୁଞ୍ଜିଭୂତ ଶିଖ
(ମନ୍ଦାକିନୀ ଫେଣ ଯଥା ଚନ୍ଦ୍ରଚୂଡ-ଶିରେ)
ପ୍ରଧାନ ପ୍ରଧାନପାଠ ଶିଖର ଦେହରେ
କର୍ଣ୍ଣରସାୟନ ଯହିଁ ପୁଂସ୍କୋକିଳ ରୁତ
ମିଶି ମୂଲ୍ ଲତ୍, ତାନେ ଭରତଅ ସ୍ୱନେ
ପ୍ରପାତେ ପ୍ରପାତବନ୍ଧୁ ମଧୁର କୂଜନେ

---

* ବାମଣ୍ଡା ରାଜଧାନୀ ଦେବଦୁର୍ଗର ଉତ୍ତରରେ ପ୍ରଧାନପାଠ' ନାମକ ଜଳପ୍ରପାତ ଓ ସୁରମ୍ୟ କାନନ ଶୋଭିତ ପର୍ବତ । ଏଠାର ବାହ୍ୟ ଦୃଶ୍ୟ ଯେପରି ମନୋହର, ସ୍ୱାସ୍ଥ୍ୟକର ଜଳବାୟୁ, ଓ ବିବିଧ ଔଷଧ

ମୁଖରିତ କରି ସଦା ବନ-ଦର-କୋଳ,
ପ୍ରସ୍ରବଣ ଜଳକଣା ଅନ୍ତଃସାର ଚୂର୍ଣୀ
ସୁବାସ ସମୀର କୋଳେ ନାଚି ଖେଳି ବୁଲେ
ସୁସ୍ନିଗ୍ଧ- ସୁଚିମୟ-ନୀଳ ବ୍ୟୋମ ପଟ୍ଟତଳେ
ରସାଇ ଜଙ୍ଗମ ପୁଣି ରସାଇ ସ୍ଥାବରେ
ବସନ୍ତର ସ୍ମୃତି ସଦା ମନେ ଉପୁଜାଇ ;
ସେ ଶିଖର ଚୁମ୍ବିତଳେ ସୁରମ୍ୟ ପ୍ରାସାଦ ,
ଦ୍ଵିଷ୍ଟ ଅଗ୍ରସ୍ଥ ଲମ୍ବିତ ଧ୍ଵଜ ଧାର ଚୂଡେ
ଚିନାଂଶୁକ, ଉଡୁଥାଇ ଫରଫର ହୋଇ
ପ୍ରଘାତ ବଲ୍ଲୀ ଉଦ୍ଭିତ ସମୀର ଲହରେ
ଲହରାଇ ଭାବ ଉର୍ମ୍ମି କବିକୁଳ ହୃଦେ ।
ବସନ୍ତର ନାଚି ଲୀଳା ପ୍ରକୃତି ଦେହରେ
ଦେଖି ବୋଲାଇଲା ଏହୁ "ବସନ୍ତ ନିବାସ"।
ସକାର ଭେଦରେ ନାନା ଅର୍ଥ ସନ୍ନିବେଶେ
ଲଳିତ- ଲଳନା- ଚାରୁ ଆକଳ୍ପ ସଦୃଶ
ରଚି ନାନା ଭାବଗର୍ଭ ସାରସ୍ୱତ ଛନ୍ଦ
ପ୍ରଧାନପାଠେ ଇଷ୍ଟବୀ ଦେବୀ ଚାରୁ କଣ୍ଠେ
ଲମ୍ବାଇଲେ, କାବ୍ୟଧାମ ଗୁମ୍ଫି ସୁଯତନେ

---

ଏବଂ ବିବିଧ ବିହଙ୍ଗମାନଙ୍କ ଦ୍ଵାରା ସେହିପରି ହୃଦ-ୟର ଆନନ୍ଦ-ଦାୟକ । ଦାରୁଣ ଗ୍ରୀଷ୍ମ ଋତୁର ମଧ୍ୟାହ୍ନ କାଳରେ ମଧ୍ୟ ନିଦାଘ ସନ୍ତପ୍ତ ହୋଇ ଏସ୍ଥାନର

କବିତା କାନନୁ- ବାଛି ବାଛି ପୁଷ୍ପରାଜି ;
ଯଥା ଲୁତା ତନ୍ତୁ ସ୍ୱତଃ ପଠ ସନ୍ନିବେଶେ
ପ୍ରପାତ ଭୃଗୁ- ପର୍ବତ- ସୁମନ ସୁବାସ
ଗୁନ୍ଥିଦେଇ ଶୋଭେ ବନଲକ୍ଷ୍ମୀ ଉରପରେ ।
ନିସର୍ଗ ପ୍ରଧାନପାଠ ଦେବୀ ମାହେଶ୍ୱରୀ
ନୀରଞ୍ଜିତ ଯାର୍ ପାଦପୀଠ, ଗଙ୍ଗାସୁତ-
ମୌଳି- ବିଘଟ୍ଟିତ-ରତ୍ନ-ଦୀପ ଶିଖୋଜ୍ଜ୍ୱଳେ ।
କଲ୍ୟାଣୀ କଲ୍ୟାଣେ ହେଉ ଏସ୍ଥଳ । ନିତେ ତ
ସେହି "ଗଙ୍ଗକୁଳ-ଉଷ - ବିଳାସର ସ୍ଥଳ ;
ବିରଚି ଏଗୀତ କାବ୍ୟ ଅମର ଅକ୍ଷରେ ।

ରାଜା ଶ୍ରୀସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ।
ରାଜଧାନୀ ଦେବଗଡ ବାମଣ୍ଡା
ତା ୨୬ । ୯ । ୧୯୦୯ ମସିହା
ଭାଦ୍ରବ ମାସ ଶୁକ୍ଳପକ୍ଷ ଏକାଦଶୀ ରବିବାର
( ସୁନିଆଁ ଦିବସ )
ସ୍ନ ୧୩୧୭ ସାଲ୍

—o—

ଆଶ୍ରୟ ଗ୍ରହଣ କଲେ ଜୀବନ ପରମ ଶାନ୍ତି ସୁଖରେ ପୁଲ୍ଲକିତ ହୋଇଉଠେ, ମୂଳତଃ ଏଠାରେ ବାସନ୍ତିକ ସ୍ୱଭାବ ସୁଲଭ ନିର୍ମଳ ଆନନ୍ଦ ଦାୟକ ବିବିଧ କୁସୁମ, ବିବିଧ ବିହଙ୍ଗ ଓ ମୃଦୁଳ ସମୀରଣ ଚର-

ବସନ୍ତ-ନିବାସ । *

ବସନ୍ତ-ବୃତ୍ତ ।

ଭାବମୟ ଭିତ୍ତି-ପଟେ ମୂର୍ତ୍ତିମନ୍ତ
ପ୍ରକୃତି-ଅଲେଖ୍ୟ-ପ୍ରମୁଖ,
ଶକୁନ୍ତ-କାକଳୀ କଳ ଉଲକେଳି-
ରଞ୍ଜିତ ମାର୍ତ୍ତଣ୍ଡ ମୟୂଖ ;
ସ୍ୱଭାବ-ରଚିତ ବସନ୍ତ-ବିଳାସ,
ଏଣୁ ଏ ବସନ୍ତ-ନିବାସ ବସନ୍ତ-
ନିବାସବସନ୍ତ-ନିବାସ ।

ବସନ୍ତ-ନିବାସ

ବସନ୍ତ-ବୃତ୍ତ ।

କଳକଣ୍ଠ ଯହିଁ ନିରତେ କୂଜଇ
ସୁରମ୍ୟ ବସନ୍ତ ରାଗରେ,
ରସାଇ ପ୍ରେୟସୀ- କୋକିଳା-ହୃଦୟ
ଭସାଇ ସମୀର- ସାଗରେ

ନିଧୁବେ, ଭ୍ରମର-ଗୁଞ୍ଜନ ମିଶଇ
ସେହି ଏ ବସନ୍ତ-ନିବାସ ଯହିଁରେ,
ବାସନ୍ତ-ବିହଗ ରମଇ ।

---

କାଲ ବିରଚିତ । ଏହି ସ୍ଥାନରେ ମାନନୀୟ ବାମଣ୍ଡା-ଧୀଶ୍ୱର ଶ୍ରୀମାନ୍ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ମହୋଦୟ 'ବସନ୍ତ ନିବାସ' ନାମକ ଭବନ ନିର୍ମାଣ କରାଇ ଅଛନ୍ତି । ଏହି ମନୋରମ ସ୍ଥଳ ପ୍ରତି ଲକ୍ଷ୍ୟ

## ବସନ୍ତ-ନିବାସ *।

### ବସନ୍ତ- ବୃତ୍ତ ।

ମାର୍ତ୍ତଣ୍ଡ - ମୟୂଖ – ବର୍ଣ୍ଣ ବିଶ୍ଳେଷଣେ
ଝଲ- ଉଠୁ ଯହିଁ ଭାସ୍ୱର,
ଉଦଧି-ଲଲାଟ-ହୀର ଉଜ୍ଜ୍ୱଳତା –
ସମ ଶୋଭେ ବହୁସୁନ୍ଦର,
ଯହିଁରେ, ଶାନ୍ତରୂପ ହୁରୁଦାହାର,
ସେହି ଏ ବସନ୍ତ- ନିବାସ, ବସନ୍ତେ
ଝଲକେଲ ଯହିଁ ଅନ୍ତର ।

---

କବି ଦେବଦୁର୍ଗର ସାହିତ୍ୟସେବୀ ଗଣ ବସନ୍ତ ବୃତ୍ତରେ ଗୋଟିଏ ୨ କବିତା ଲେଖି ଅଛନ୍ତି ସେସବୁ ଉକ୍ତ 'ବସନ୍ତ ନିବାସ' ରେ "ସାରସ୍ୱତ ଚତ୍ୱର"ରେ ସୌଧ ଭିତ୍ତିରେ ସଂଯୁକ୍ତ ହେବା ନିମନ୍ତେ ଶିଳାଖଣ୍ଡ ମାନଙ୍କରେ ଖୋଦିତ ହୋଇ ଅଛି । ସେହି ସ୍ଥାନକୁ ଲକ୍ଷ କରି ମହାରାଜ ମହୋଦୟ ଉକ୍ତ 'ବସନ୍ତ-ନିବାସର ଉଦ୍‌ବୋଧନ' ଓ 'ବସନ୍ତ-ନିବାସ' ପ୍ରଭୃତି କବିତା ଲେଖି ଅଛନ୍ତି । ତନ୍ମଧ୍ୟରୁ 'ବସନ୍ତ ନିବାସର ଉଦ୍‌ବୋଧନ' କବିତାଟି ଉକ୍ତ ସ୍ଥାନର ଦ୍ୱାର ଦେଶରେ ସୌଧ ସ୍ତମ୍ଭରେ ଶିଳାଲିପିବଦ୍ଧ ହୋଇ ସଂଯୁକ୍ତ ହୋଇଅଛି । ଅନ୍ୟାନ୍ୟ କବିତା ସବୁ ଅନ୍ୟ କବି ମାନଙ୍କର କବିତା ସହ ଶିଳା-ଖୋଦିତ

ବସନ୍ତ – ନିବାସ ।

ବସନ୍ତ – ବୃତ୍ତ ।

ଦର ବିକଶିତ ସଚ୍ଛ ସୁମନାରୁ
ଗନ୍ଧବହ ବାସ ସେବଇ,
କଳ୍ପନା–ସୁନ୍ଦରୀ–ଚିତ୍ତ ତୋଷୁଥାଇ
ବନପ୍ରିୟ – ରୁତ ମିଶାଇ,
ବସନ୍ତେ, ବସନ୍ତ–ବିଭବଲକ୍ଷ୍ମୀ
ବସନ୍ତ ସ୍ମୃତିକୁ ଉପୁଜାଏ ଦେଖୁ
ବସନ୍ତ– ନିବାସ ଏହିତ ।

---

ହୋଇ ଯଥା ସ୍ଥାନରେ ସଂଯୁକ୍ତ ହେବାକୁ ରକ୍ଷିତ ହୋଇଅଛି । ବସନ୍ତ ନିବାସ, ବାସନ୍ତିକ ପକ୍ଷୀଙ୍କର କୂଜନ ସର୍ବଦା ଯେଉଁଠାରେ ଶୁଣାଯାଏ । ବସନ୍ତନିବାସ, ନଦୀ ଜଳର ଧାର୍ଯ୍ୟ ପ୍ରକାଶିତ ହୋଇ ଯେଉଁ ଠାରେ ବାସନ୍ତିକ ଶୋଭା ପ୍ରକାଶ କରେ । ବସନ୍ତ–ନିବାସ, ଚିରଦିନ ଯେଉଁଠାରେ ବାସନ୍ତିକ ଶୋଭା ପ୍ରକାଶିତ ।

ପ୍ରକାଶକ ।

—<✻○✻>—

# ଜହ୍ନ ମାମୁଁ †

( ଅଷାଢ଼ ଶୁକ୍ଳ )

ସୂର୍ଯ୍ୟ ପରାଗରେ ଦେଖିଲି ଯାହା,
ମନକୁ ଆଶ୍ଚର୍ଯ୍ୟ ଲାଗୁଛି ତାହା,
ସୂର୍ଯ୍ୟ ବିମ୍ବକୁ ମାମୁ ଆବୋରିଲା,
ପେଟ ଭିତରେ ତେଜକୁ ଭରିଲା,
ଏଣୁ କି ଗୋ ଅଇ
କିରଣ କୁଳେ ତେଜ ହଟେକାଇ । ୧
ମେଷ ରାଶି ମଧ୍ୟେ ମାମୁ ରହିଛି,
ସ୍ୱର୍ଣ୍ଣଥାଳି ପରି ଦେହ ଦିଶୁଛି,
ଆଜି ଯିବି ମୁହିଁ ମାଗିବି ତାଙ୍କୁ,
ମୋତେ ଦେଇଦେବେ ମେଷ ପିଲାକୁ,
ଭାଇ ! କାଲି ଯିବୁ
ବୃଷଭ ଗୋଟିଏ ଦେଖିଆସିବୁ । ୨
କାଲି ମାମୁ ଥିବେ ବୃଷଭ ଘରେ,

---

† ବହୁବର୍ଷ ପୂର୍ବେ ଦେବଦୁର୍ଗର ସାହିତ୍ୟ ସେବକ ବୃନ୍ଦ "ଜହ୍ନମାମୁ" (ଚନ୍ଦ୍ର) ପ୍ରତି ଲକ୍ଷ କରି ଲେଖିଥିବା ଅନେକ ଗୁଡ଼ିଏ କବିତା ସ୍ୱର୍ଗୀୟ ମହାରାଜ ସାର୍ ସୁଢ଼ଳଦେବ K C I E ମହୋଦୟଙ୍କ ଦ୍ୱାରା

ଆମ୍ଭଙ୍କୁ ଦେଖିବେ ବର୍ଷ ମଧରେ,
ତେଣୁ ସେ ସଙ୍ଗରେ କର ପ୍ରଚାର,
ଆମ୍ଭର ଭୟକୁ ନେବେତ ହର,
ମାମୁ ଠାରୁ ବଳ
ଆମ୍ଭଙ୍କୁ ଭଲବ କଏ ପଖାଳ । ୩
ମୋ ମାମୁ ଗମନ୍ତେ ବୃଷରାଶିକୁ,
ସଂସାରେ ବୋଇଲେ କଳଙ୍କି ତାଙ୍କୁ,
ଯେଣୁ ସେ ଗୋଠରେ ସ୍ବତ ରହିଲେ,
ଗଉଡ ପରି କର୍ମ ଆଚରିଲେ,
ତେଣୁ ତାଙ୍କ ଦେହେ
ଗୋବର ଲାଗିଛି କଳଙ୍କ ନୋହେ । ୪
ସୁନ୍ଦର ରୂପକୁ ମାମୁ ଧରନ୍ତି,
ହଂସ ରାଶି ମଧ୍ୟେ ସଦା ବୁଲନ୍ତି,
ସତାଇଶ ଜନେ ବେଢ଼େ ବୁଲଇ,
ମିନ, ବୃଷ, ମକର ରେ ରହଇ,
ମନା କରିବାକୁ
ଯାଉଛି କହିବ ନଦୀଆଇଙ୍କୁ । ୫

---

ଏକତ୍ରିତ ଭାବରେ "ଜହ୍ନମାମୁ" ନାମକ ପୁସ୍ତକରେ ପ୍ରକାଶିତ ହୋଇ ଅଛି । ଉପରୋକ୍ତ "ଜହ୍ନମାମୁ" ଶୀର୍ଷକ କବିତା ଗୁଡ଼ିକ ସେହି ସମୟରେ ଲିଖିତ ହୋଇ ସେହି "ଜହ୍ନମାମୁ" ପୁସ୍ତକରେ ପ୍ରକାଶିତ ହୋଇଥିଲା । ପ୍ରଃ

ସିଂହ ଖାଇଦେବ, ବଣ୍ଟି ଗ୍ରହିବ,
ଅବା ମଗର ମାମୁଙ୍କୁ ଗିଳିବ,
ଏହା ଭାଳିଣି ଡରଇ ମୁହିଁ,
ମାମୁଁ ବିନା ସୁଧା ପାଇବା କାହିଁ,
ଘର ଭୁଞ୍ଜିସିବୁ
ମୋର ସଙ୍ଗରେ ଆଇଙ୍କୁ କହିବୁ । ୬
ଅନ୍ଧାର ପକ୍ଷରେ ମାମୁ ଛିଡଇ,
ଉଜ୍ଜଳ ପକ୍ଷରେ ପୁଣି ବଢ଼ଇ,
ବଢ଼ିବା ଛିଡବା ଅପୂର୍ବ ନାହିଁ,
ଯାହା କରନ୍ତି ବ୍ରହ୍ମାଣ୍ଡ ସାଇଁ,
କହୁଅଛି ଶୁଣ
କହିଯାଇଅଛି ଯାହା ବିଜ୍ଞାନ । ୭
ଅଲିତ ପରି ମାମୁ ବୁଲିବାରୁ,
କେବେ ମୋଟ ହୁଏ କେବେ ବା ସରୁ,
ତପନ ପାଇଁ ତାହାଙ୍କ ବତାଇ,
ଆମ୍ଭ ପୃଥିବୀ ତ ହୁଏ ଘୋଡାଇ,
ସେଯୋଗେ ଛିଡଇ
ପୃଥିବୀ ଘୁଞ୍ଚିଲେ ପୁଣି ବଢ଼ଇ । ୮
ମାମୁ ବାହାରିଲେ ଅନ୍ଧାର ଗଲା,
ରୁପା ପରି ଗଛ ପତ୍ର ଦିଶିଲା,
ପର ଉପକାର ଜଗତେ କରି,
କଳଙ୍କି ହୋଇଲେ କଳଙ୍କ ହରି,

ଅନ୍ଧାର ଘିରିଲେ,
ଦ୍ୱଷ ପାନେ ତର ପର ହୋଇଲେ । ୯
ବାର ଘର ବୁଲି ମାମୁ ମୋହର,
ବଡ ଲୋକଠାରେ ନୁହେ ସୁନ୍ଦର,
ଯେଣୁ ସେ ଅମିଷ ଲୋଭ ବୁଲନ୍ତି,
ଅଳି ମୀନେ କାଲି କର୍କଟେ ଯାନ୍ତି ,
ହେବାରୁ ବ୍ରାହ୍ମଣ
କଳଙ୍କି ନାମହୋଇଛି ଶୋଭନ । ୧୦
ମୋର ମାମୁ ସବୁଦିନେ ଶିକାର,
ତେଣୁ ଧନୁରେ ହୁଅନ୍ତି ଆଦର
ଧନୁ ବ୍ରଣ ଘଣ କଠିନ ଦେହ,
ଯୋଗୁଁ ବୋଲନ୍ତି କଳଙ୍କି ବଗ୍ରହ,
କ୍ଷତ୍ରିୟ ହେବାରୁ
ଦ୍ୱିଜରାଜ ନାମ ଅଟଇ ଗୁରୁ । ୧୧
କ୍ଷତ୍ରିୟ ବଡମା ଯୋଗୁଁ ତାଙ୍କର,
ଜନ୍ମିଲା ମନେ ବଡ ଅହଂକାର,
ଆପଣ ଗୌରବ ଭୁଲିବା ପାଇଁ,
ଭୁଲ ସ୍ୱଶିଦାକୁ ଗଲେ ଗୋଡାଇ ,
ସୂର୍ଯ୍ୟ ତହିଁ ଥିଲେ
ଉଣା ହେବାରୁ ପଳାଇ ଆସିଲେ । ୧୨

——<୫✻୫>——

# ବାଲ୍ୟ କବିତା ବଳୀ ।

## କୁମୁଦିନୀ ।

### ବଙ୍ଗଲଶ୍ରୀ ।

ଦେବ ଦିନଇଶ ଯାତ୍ରା କରି ଶେଷ
ଅସ୍ତାଚଳେ କଲେ ବାସ,
ତାରକା ଭୂଷିତା- ଯାମିନୀ ଆସିଲା
ପ୍ରକାଶି ଚନ୍ଦ୍ରିକା-ହାସ ; ୧
ଶୋଭା-ନିକେତନ ଯାମିନୀ-ବଦନ
ପ୍ରାଚୀ ଦିଶେ ଶଶଧର,
ଉଦିତ ହୁଅନ୍ତେ ସକଳ ଉଜ୍ଜ୍ୱଳ
ଦିଶେ ଅତି ମନୋହର । ୨
ଫିଟିଗଲା ମୁଦ, କୁମୁଦିନୀ ଗଣ
ହରଷିଲେ ସତେ ହସି,
ବନ୍ଧୁ - ଦରଶନେ ଚିର ବିରହିଣୀ
ମନ ହି ଗଲା ରେ ରସି । ୩
ଦରଶନେ ଜନ- ମନ ମୁଗ୍ଧ କରେ
ମନ୍ଦ ବାତେ ହଲି ହଲି ;
ବନ୍ଧୁ ଦରଶନ କରାଉଛି, କୋଲେ
ବସାଇ କି ମତଅଳି ? । ୪

ପୀୟୂଷ-ଭଣ୍ଡାର    କର ଝଟକଲା
ଦିଗ୍ବଳୟେ ପ୍ରତିଦେଶେ ,
ପାଖୁଡ଼ା ବିକାଶେ    କୁମୁଦିନୀ-ଗାତ୍ର
ରୋମାଞ୍ଚିତ ପରି ଦିଶେ । ୫
ତଡ଼ାଗ-ତୀର ଦିଗ    ପୁଷ୍ପ ବାଟିକାରୁ
ଆସୁଅଛି ସମୀରଣ ,
ପ୍ରକୃତି ଦେବୀଙ୍କ    ନବଦମ୍ପତିଙ୍କି
କରନ୍ତି ହର୍ଷେ ବ୍ୟଜନ । ୬
ପାଖୁଡ଼ା ମଧ୍ୟରୁ    ଗଳି ପଡ଼ୁଅଛି
ସରସୀର ସ୍ୱଚ୍ଛ ବାରି
ସମାଦରେ ବନ୍ଧୁ—    ନୟନୁ, ଚନ୍ଦ୍ରମା
ପ୍ରେମାଶ୍ରୁ ଦେଲେ କି ବାରି । ୭
କି ଯୋଗରେ ଆଜ    ଦେବ ଦିନମଣି
ବିଜେ କଲେ ଅସ୍ତାଚଳେ ,
କୁମୁଦିନୀ-ହର୍ଷ    ଦେଖିଲୁ ନୟନ
ସରୋବର ସ୍ୱଚ୍ଛ-ଜଳେ । ୮
ତୋହର ଏଶୋଭା    ଦେଖି କୁମୁଦିନୀ
ମନେ ମୋର ବିଚାରଇଁ
କି ମୋହନ ବେଶ    ଧରିଅଛୁ କି ଗୋ !
ଜଗତ ମୋହିବା ପାଇଁ ? । ୯
କାହାର ପ୍ରସାଦେ    କି ହେତୁ କି ଶକ୍ତି
କରିଛୁ ଅଙ୍ଗେ ବହନ ?

ତୋରୂପ ଦର୍ଶନେ    ମୁଗ୍ଧ ହେଉ ନାହିଁ
କେଉଁ ପ୍ରଦର୍ଶକ ମନ ? । ୧୦
ପୁଣି ଦିନ ନାଥ    ଉଦୟ ହୋଇଲେ
ଯୋଡଭରୁ ଭୁଚି ବଦନ
ଅଛ ଅଲକ୍ଷଣ    କମଳେ କପାଇଁ
ହେଉ ଏତେ ତୁଷ୍ଟ ମନ ? ୧୧
ତୋର ଶୋଭା ଦେଖି    ପଦ୍ମିନୀ ସୁନ୍ଦରୀ
ଲଜ୍ଜାରେ ପୋତେ ଯା ମଥା ,
ନ ପୁଣି ଦିନେଶ-    ସଙ୍ଗିନୀ ହୋଇବ
ବୋଲି କି ଲଭଇ ବ୍ୟଥା ୧୨
ହରଷ , ବିଷାଦେ    ଚକ୍ରନେମି କ୍ରମେ
ଘୂରୁଏ ସିନା ସଂସାର ,
ମନ ମୁଗ୍ଧ କର    କ୍ଷଣିକ ସମ୍ପଦ
ଅଟଇ ଅତି ଅସାର । ୧୩

—— ❋ ——

ପ୍ରଭାତେ ବସନ୍ତ-ଆଗମନୋତ୍ସବ ।

ବଙ୍ଗଳାଶ୍ରୀ ।

ଧରାକୁ ବସନ୍ତ    ଭୂଷିତ କରନ୍ତେ
ଆନନ୍ଦିତ ସର୍ବ ଜନ
କାନନ ଅରଣ୍ୟେ    ଉଚ୍ଛୁଳି ପଡ଼ଇ
ଶୁକ , ପିକ , ସାରୀ-ସ୍ୱନ । ୧
ବସନ୍ତ ଆଗମେ    ପ୍ରକୃତି ଦେବୀଙ୍କି

ଉତ୍ସବ ଦିବ୍ୟ ସାଜୁଛି
ଗୁଣୁ ଗୁଣୁ ସ୍ୱରେ          ଡେଣୁକି ମଧୁପ
ମଲ୍ଲିକା ଦର ବାଉଛି । ୨
କାନନେ କାନନେ          ମଳୟ ସମୀର
ବହୁଅଛି ଧୀରେ ଧୀରେ
ପ୍ରକୃତ କି ଖଡ଼ୁ ଅଛି          ଖଟଣିରେ
ବ୍ୟଜନ ବାଞ୍ଛାବଧୂରେ ? ।୩
ବୃନ୍ଦ ବୃନ୍ଦ ହୋଇ          ରସାଳ, ବକୁଳ-
ଗର୍ଭରୁ ଖସଇ ମଧୁ
ସତେ ଋତୁରାଟ-          ଅଭିଷେକ ବାରି
ବର୍ଷିଲେ କି ସୁର ବଧୂ । ୪
ଖସି ପଡୁଅଛି          ଶେଫାଳୀ ସୁମନା
ଉନ୍ନତ ତରୁ-ଉପରୁ
ଅପ୍ସରା ବର୍ଗକି          ଉତ୍ସବ ଦର୍ଶନେ
ବର୍ଷନ୍ତି ପୁଷ୍ପ ଦିବରୁ । ୫
ବାଳ ସୂର୍ଯ୍ୟ ପିଣ୍ଡ          ହୋଇ ସମୁଦିତ
ମଣ୍ଡିଛି ପ୍ରାଚୀ ଗଗନ,
ସିନ୍ଦୂର ଟୋପାକି          ବସନ୍ତ ରାଜାର
ଲଲାଟେ ବିଶେ ଶୋଭନ ? । ୬
ଫୁଟିଅଛି ନାଗ -          କେଶର ପାଦପେ,
ମନରେ ହୁଏ ପ୍ରତୀତ
ବସନ୍ତ ରାଜାର          ଶିରେ କି ଶୋଭଇ

ସୁରମ୍ୟ ସୁବର୍ଣ୍ଣ ଛତ୍ର ? । ୭

ପାଦପେ ପାଦପେ ଦିଶୁଅଛୁ ଯାହା
ହେମକାନ୍ତ ଗନ୍ଧଫଳୀ
ଋତୁରାଜଙ୍କର ବନ୍ଦାପନା ପାଇଁ
ଏକି ଦୀପ ଶିଖାବଳି । ୮

ଗମ୍ଭୀର ଢାଳଇ ଶିରୀଷ ପାଦପ
କୁସୁମ ଛଳେ କି ଚନ୍ଦ୍ରେ
ନବୀନ ରସାଳ - ପଲ୍ଲବ-ପତାକା
ପ୍ରକାଶିତ ଠାବେ ଠାବେ । ୯

ଭରତଥା ପକ୍ଷୀ ସ୍ୱପ୍ରିୟା-ସଙ୍ଗତେ
ନାଚୁଛି ନୀଳ ଗଗନେ ,
ସୁମଧୁର ସ୍ୱରେ ସ୍ୱଜ କୀର୍ତ୍ତି ପିକ
ଗାଏ କିବା ହୃଷ୍ଟ ମନେ ? ୧୦

ପ୍ରଜାପତି କୁଳ କୋଦଣ୍ଡ ଆକାରେ
ଉଡ଼ି ମନ ନେବ--ହରି
ଋତୁରାଜଙ୍କର ଆବାହନ ପାଇଁ
ରଚିବେ ତୋରଣ ପରି ? ୧୧

ଅତି ହର୍ଷ ଭରେ ଭ୍ରମୁଛନ୍ତି ବନେ-
ବନେ ମୃଗମୃଗୀ ଦଳ ,
ଅଭିଷେକୋତ୍ସବେ ମତ୍ତ ହୋଇ କିସେ
ସ୍ୱଜ ଭକ୍ତ-ପ୍ରେମାକୁଳ ? । ୧୨

ପ୍ରଚଣ୍ଡ ତପନ ଧରି ଗ୍ରୀଷ୍ମରାଜ

ପ୍ରବେଶିଲେ ଉଦନ୍ତରେ
ନଗ୍ନ ଅଧ୍ୱପଥ୍ୟ      ଶେଷକରି ମଥୁ
ଚଳିଲେ ଅନ୍ତ ସନ୍ଧରେ । ୧୩
ଭାଗ୍ୟ--ବନ୍ଦନୟୃ      ଐହ୍ୱପଟି ସିନା
ଘଟଇ ମର୍ତ୍ତ୍ୟେ ନରର
ଜୀବନ, ଯୌବନ      ଧାତ୍‌ବ ସମ୍ଭାର
ସକଳ ବସ୍ତୁ ନଶ୍ୱର । ୧୪

——(❋)——

## ବର୍ଷାବର୍ଣ୍ଣନା ।

ବଙ୍ଗଳାଶ୍ରୀ ।

ପ୍ରବେଶ ହୋଇଲା      ବରଷା ସ୍ୱଜନ
ଜଳଦ-ମାତଙ୍ଗେ ଚଢ଼ି,
ଆଗମନୋତ୍ସବ -- ବାଦ୍ୟ ସୁଚଉଛି
ନୀରଧର ଘଡଘଡ । ୧
ନୀଳ ନୀରଧର — ଅଙ୍କ ବିଳାସିନୀ
କ୍ଷଣ ପ୍ରଭା - ସୌଦାମିନୀ
ସ୍ୱାଗତ ସମ୍ଭାର      ଚହ୍ନାଇ ଦେଉଛି
କୁଳଶେ କମ୍ପି ମେଦିନୀ । ୨
ମହା ମହୀଧର — ଶିଖରେ ମୟୂର
ସୁପ୍ରିୟା ସଙ୍ଗେ ନାଚୁଛି,
ବରଷା-ସ୍ୱଙ୍କାର      ଅଗମନ ପାଇଁ,

‘କେକା’ ଭେରୀ ବଜାଉଛି । ୩
ପାଦପ – ଶାଖାରେ ଉର୍ଣ୍ଣନାଭ ସୂତ୍ର
କରଇ ମନମୋହନ
ବର୍ଷା-ବାରି ତହିଁ ପଡ଼ି ବିନ୍ଦୁ ବିନ୍ଦୁ
ଦିଶଇ ମୁକ୍ତା ଯେସନ । ୪
ସଜାଙ୍କର କଣ୍ଠ — ଭୂଷଣ ପାଇଁକି
ଗୁନ୍ଥି ସ୍ୱଚ୍ଛ ମୁକ୍ତା-ମାଳା
ଉପହାର ପାଇଁ ସତେକି ସଜାଡ଼ି
ରଖିଛି ପ୍ରକୃତି- ବାଳା । ୫
ନବ ଇନ୍ଦ୍ରଧନୁ ଗଗନ ମାର୍ଗରେ
ନାନାରଙ୍ଗେ ପ୍ରଦର୍ଶିତ,
ପ୍ରକୃତି-ପର୍ବୀ — ଲଲାଟେ ଲଲାଟ-
ପାଟି ପରି ବିମଣ୍ଡିତ । ୬
କେତେବେଳେ ମେଘ କଳା ଧଳାହୋଇ
ପ୍ରକାଶେ ନାନା ରଙ୍ଗରେ,
ଚିତ୍ର ବୋଇତ ଭାସି ଯାଉଅଛି
ସତେ କି ନୀଳ ସାଗରେ । ୭
ନୀଳ ଅକାଶରେ ଚାତକ ସକଳ
କରନ୍ତି ହର୍ଷେ ଭ୍ରମଣ
ସମୀର-ଆନୀତ ସ୍ନିଗ୍ଧ ଜଳକଣା
କରୁଅଛନ୍ତି ସେବନ । ୮
କୀଚକ ଗହଳେ ବସି କାଳକଣ୍ଠ

ଡାକୁଅଛୁ ଉଲ୍ଲାସରେ
ବନ୍ଧୁଅଛୁ କି ସେ ସଗର୍ବେ ପିକକୁ
କରିଛୁ ଦର୍ପ। ମୌନରେ । ୯
ପୂରାଇ ପୂଲିନ ପୂର୍ଣ୍ଣିଗର୍ଭା ନଦୀ
ବହେ କଲ କଲ ନାଦେ
କାନ୍ତ ପାଶ୍ୱବାରେ ଭେଟିବାକୁ କସେ
ଗାଇ ଅତି ଆହ୍ଲାଦେ ? ୧୦
ଇନ୍ଦ୍ରଗୋପ ପୁଞ୍ଜ ଥାଉ ଥାଉ ହୋଇ
ଶୋଭନ୍ତ ଧରା ଉପରେ;
ପଦ୍ମରାଗ-ହାର ପୃଥ୍ୱୀ ଦେବୀ କ
ପିନ୍ଧିଅଛୁ ଯତନରେ ? ୧୧
ପ୍ରକୃତ-ବିକୃତ ଏହି ସବୁ ସିନା
ଇନ୍ଦ୍ରଜାଲ ଭଅଛଛି,
ନଶ୍ୱର ସଂସାର — ରଙ୍ଗମଞ୍ଚେ ସତେ
ଅଭିନୟ ଦେଖାଉଛୁ ? ୧୨

—o—

## ହିମାଚଳ ।

ବଙ୍ଗଳାଶ୍ରୀ ।

ଭାରତ-ଉତ୍ତରେ ପ୍ରାଚୀର ପ୍ରକାରେ
ବିରାଜଇ ହିମାଚଳ,
ଯାର ଶିରଦେଶ ସର୍ବଦା ରହିଛୁ

ତୁଷାରେ ହୋଇ ଧବଳ । ୧
ଯାର ବକ୍ଷସ୍ଥଳେ ବିହରନ୍ତି ସଦା
କସ୍ତୁରିକାମୃଗ ଦଳ
ଯୂଥ ଯୂଥ ହୋଇ ଭ୍ରମୁଥାନ୍ତି ଯହିଁ
ମଦମତ୍ତ ଦନ୍ତାବଳ । ୨
ରଜତ ମଣ୍ଡିତ ପ୍ରାୟେ ସମୁଜ୍ଜ୍ୱଳ
ହିମାଚଳ – କଳେବର
କାଞ୍ଚନ୍ଦାମ ସମ କେତେ ସୁଗନ୍ଧିନୀ
ଶୋଭାକରୀ ନିତମ୍ବର । ୩
ଯତ୍ର ବକ୍ଷସ୍ଥଳେ ଦିବସ ରଜନୀ
ଗଙ୍ଗାଦ୍ବୟ ପ୍ରବାହିତ
ହିମାଚଳ ବକ୍ଷେ ଶୋଭୁଅଛି କିରେ
ଉଜ୍ଜ୍ୱଳ ଯଜ୍ଞୋପବୀତ ? ୪
ହର–କୋପାନଳେ ମଦନ ଏଠାରେ
ହୋଇ ବହ୍ନି ଭସ୍ମସାତ
ଲଭିଥିଲା କି ସେହି ବହ୍ନି ? ଗିରି
ଦିଗନ୍ତ ଶୁଭ୍ର ପ୍ରପାତ । ୫
କୈଳାସ - କନ୍ଦର ଅତି ମନୋହର
ଶିବଙ୍କ ବିଳାସ ଧାମ
ଯାହାଙ୍କ ତପସ୍ୟା ଭଗ୍ନ କରିବାରୁ
ଭସ୍ମସାର ହେଲା କାମ । ୬
ଏ ଗିରି ସ୍ଥଳରେ ଅଶୋକ ମୂଳରେ

ପାର୍ବତୀ ତପେ ନିମଗ୍ନା ।
ଭୂତନାଥ - ଅଙ୍କ-　　ଲକ୍ଷ୍ମୀ ହେବାପାଇଁ
ଥିଲେ ଚିନ୍ତାକୁଳ ମନା । ୭
ଏ ଭୂଧର - ପାଦେ　　ଅତିବ ବିଷାଦେ
ଶୋକ କରୁଥିଲେ ରତି ,
ଭସ୍ମ ପ୍ରାପ୍ତ ହେଉଁ　　ଲ୍ଵିଷାକ୍ଷିତ କେତା
ପୁଷ୍ପଧନ୍ଵା ପ୍ରାଣପତି । ୮
ଦ୍ଵାପର ଯୁଗରେ　　ଯୁଧିଷ୍ଠିର ବୀର
ସ୍ଵର୍ଗ ଅରୋହଣ କାଳେ
ଏହୁ ଗିରି ଦେହେ　　ନିକ୍ଷେପି ପଦୃର
ବିକେକଲେ କୁତୂହଳେ । ୯
ସୁବିଶାଳ କାୟ　　ହିମଗିରିବର
ଦେଖିଛି ଯାର ନୟନ
ତାର ନେତ୍ର ଏକା　　ପବିତ୍ର ଅଟଇ
ସାର୍ଥକ ତାର ଜୀବନ ।

— ❉:o:❉ —

# ପ୍ରଦୋଷ ବର୍ଣ୍ଣନା ।

ବଙ୍ଗଳାଶ୍ରୀ ।

ଦେଖୁ ଦେଖୁ ଦିବା ଅବସାନ ହେଲା
ଉଇଁଲେ ନଭେ ତାରକା,
ମଧୁ ଲୁଣ୍ଠି ଖାଇ ମଧୁପ ସକଳ
ତେଜିଲେ ପୁଷ୍ପ ବାଟିକା । ୧
ଗୋଧୂଳି କୁ ଦେଖି 'ହମ୍ବା'ରବ ଦେଇ
ପଶିଲେ ଗାଈ ଗୋଠରେ
ଦଳ ବାନ୍ଧି ପକ୍ଷୀ ନୀଡ଼ ଖୋଜିବାକୁ
ଉଡ଼ିଲେ ଅନ୍ତରୀକ୍ଷରେ । ୨
ପୁଣ୍ଡରୀକ ଶୋଭା ଲୁଣ୍ଠି କରୁଛନ୍ତି
ନଭରେ ଉଡ଼ି ବକାଳି,
ଲୋକେ କେ ଅମର ମନେ, ଅବାକଳା-
ବାରିଦ - ଦଶନାବଳୀ ? ୩
କୁମୁଦିନୀ ଗୁଛ ହେଲେ ବିକଶିତ
ପ୍ରିୟ ଚନ୍ଦ୍ର ଦରଶନେ
ପଦ୍ମିନୀ ସକଳ ସଙ୍କୋଚ ସ୍ୱରୂପ
ରହିଲେ ଜଳେ ମଉନେ । ୪
ପଦ୍ମିନୀଙ୍କ ତେଜି ଉଡ଼ିଗଲେ ବେଗେ
ଚଞ୍ଚଳ ଭ୍ରମର ଦଳ
ମନ୍ଦ ସମୀରଣ ସରସୀ ଜଳରେ

ଖେଳାଉଛନ୍ତି ବୀଚୀମାଳ । ୫
ଶଙ୍ଖ, ଘଣ୍ଟା ବାଦ୍ୟ    ଦେଉଳୁଁ ଶୁଭିଲା
ଉଠିଲା ସନ୍ଧ୍ୟା ଆଳତି ,
ଧୀରେ ଧୀରେ ପ୍ରାଚୀ-    ଦିଗେ ଉଦେହେଲେ
ସୁନ୍ଦରୀ ରଜନୀ - ପତି । ୬
ପୀୟୂଷ ପରିପୂର୍ଣ୍ଣ    ମୟୂଖ ପ୍ରକାଶି
ବଢ଼ାଇଲେ ରାଶି ଶୋଭା
ଯାର କର ସ୍ପର୍ଶେ    ସରୋବର ଜଳେ
କୁମୁଦିନୀ ମନୋଲୋଭା । ୭
ମନ୍ଦ ସମୀରଣେ    ଦୋହଲି ଦୋହଲି
ଦେଖୁଅଛି ପ୍ରାଣପତି
ଢଳି ପଡୁଅଛି    କେବେ ସ୍ୱଜନୀରେ
ରଙ୍ଗେ କୁମୁଦିନୀ ସତୀ । ୮
କ୍ଷୁଦ୍ର ବୀଚୀମାଳେ    ଶୋଭଇ ସରସୀ
ସୁରମ୍ୟ ଚନ୍ଦ୍ର କିରଣେ ,
ହଂସୀ, ଚକ୍ରବାକୀ    କ୍ରୀଡ଼ୁଛନ୍ତି ତହିଁ
ଦୋଳି ବୀଚୀ ଦୋଳାସନେ । ୯
ସୁନୀଳ ଅମ୍ବରେ    ତାରାଗୁଚ୍ଛେ କିବା
ଜଳିଲାଣି ଦୀପାବଳୀ
କିଅବା ଗଗନ —    ଉଦ୍ୟାନ ଅନ୍ତର
ଫୁଟିଲାଣି ପୁଷ୍ପକଳି । ୧୦

ପ୍ରଦୋଷ କିରଣ ଧୀରେ ଧୀରେ ଲୀନ
ହୋଇଲା ଅକ୍ଲାନ୍ତ ଦେହେ
ରବି ରଥଚୂଡ଼ ପଶିଲେ ସଚେତଙ୍କ
ବାରୁଣୀ ଅଚଳ ଗେହେ । ୧୧

—※:୦:※—

ସମାପ୍ତ ।



Printed by Dinabandhu Garnayak
The Hitaishini Electric Machine Press
BAMRA

# ଶୁଦ୍ଧିପତ୍ର !

| ପୃଷ୍ଠା | ପଂକ୍ତି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ପୀଠିକାର | | | |
| ୨ୟ ପୃଃ | ୯ | ସରଣ୍ୟ | ସରଣ୍ୟୁ |
| ୪ | ୩ | ଧୁଫେନୀଲ | ସୁଫେନଲ |
| ୦ | ୫ | ଧବଳ, ରୁଚ | ଧବଳରୁଚ |
| ୪ | ୯ | ଜନାଦ୍ର | ଜନାଦ୍ରୀ |
| ୪ | ୧୨ | ଶିଳାଦେହେ | ଶିଳାଦେହ |
| ୭ | ୭ | ଜଳକ୍ଷେ | ଜଳକ୍ଷ-ରଜତ-ଛାଃ। |
| ୭ | ୧୧ | ଗ୍ରସ୍ତା, | ଗ୍ରସ୍ତା |
| ୭ | ୧୧ | ସମଢ଼ୁଲେ | (ଭାଷାରେ ବ୍ୟବହୃତ) |
| ୭ | ୧୫ | ଛାମପଅଚ୍ଛନେ | ଛମଆଚ୍ଛାଦନେ |
| ୭ | ୫ | କୁରଙ୍ଗ ଲାଞ୍ଛନ | କୁରଙ୍ଗ-ଲାଞ୍ଛନ |
| ୮ | ୧୨ | ଗବେଷି | ଗବେଷୀ |
| ୧୦ | ୭ | ତନ୍ମୟୀ | ତନ୍ମୟ |

| | | | |
|---|---|---|---|
| ୧୨ | ୧୨ | ଭୂକ୍ଷେପେ | ଭ୍ରୂକ୍ଷେପେ |
| ୧୬ | ୫ | ଗାରିମା | ଗରିମା |
| ୧୭ | ୨ | କ୍ଷଣିକ | କ୍ଷଣିକ |
| ୧୬ | ୧୫ | ଅନନ୍ୟ | ଅନ୍ୟୋନ୍ୟ |
| ୧୮ | ୫ | ପାଶ୍ରେନ୍ତୁଛି | ପାରୁନ୍ତୁଛି |
| ୧୮ | ୯ | ମଥୂଲେଲଭ୍ର | ମଥୂଲେଲଞ୍ଜୀ |
| ୨୧ | ୧୧ | ସୌଦାମଣି | ସୌଦାମଣୀ |
| ୨୦ | ୨ | ସାକ୍ଷି | ସାକ୍ଷୀ |
| ୨୩ | ୮ | ସରସୀଜ | ସରସିଜ |
| ୨୪ | ୫ | ମକର | ମକରୀ |
| ୨୪ | ୭ | ଭଙ୍କର | ହୃଅର |
| ୨୫ | ୬ | ଅକାଙ୍କ୍ଷୀନୀ | ଅକାଙ୍କ୍ଷିଣୀ |
| ୨୫ | ୮ | ଝଲଝଲ | ଝଲ ଝଲା |
| ୨୫ | ୧୫ | ପାଂଶ୍ରେନ୍ତି | ପାରୁନ୍ତି |
| ୨୮ | ୯ | ଲୁହକେ | କୁହୁକେ |
| ୨୯ | ୪ | ଅଶ୍ବିନୀ | ଘୋଟକୀ |